

## ଡଃ ଅମୂଲ୍ୟକୃଷ୍ଣ ମିଶ୍ର

ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଓ ସୁଲେଖକ ଦୟାନିଧି ମିଶ୍ରଙ୍କ ଦ୍ୱିତୀୟ ପୁତ୍ର । ସ୍କୁଲ ଜୀବନରୁ ସ୍ୱାଧୀନତା ଆନ୍ଦୋଳନରେ ସକ୍ରିୟ ଅଂଶଗ୍ରହଣ ଏବଂ ୧୯୪୨ ଭାରତଛାଡ଼ ଆନ୍ଦୋଳନରେ ବରଗଡ଼ ପୁଲିସ୍ ଦ୍ୱାରା ଅଟକ । ହେଡ୍‌ମାଷ୍ଟରଙ୍କ ରଷ୍ଟିକେଟ୍ ପରୱାନା । ଛାତ୍ରଜୀବନରେ କୃତୀ ଛାତ୍ର, କୁଶଳୀ ଅଭିନେତା, ନିୟମିତ ଖେଳୁଆଡ଼, ସ୍କାଉଟ୍‌ର ଟ୍ରୁପ୍ ଲିଡର୍ । ଜଣେ ସାହସୀ ସ୍ୱେଚ୍ଛାସେବକ ଓ ବିଶିଷ୍ଟ ବକ୍ତା । ସ୍କୁଲ ଓ କଲେଜ ଜୀବନରୁ ସାହିତ୍ୟ ସୃଷ୍ଟି ପାଇଁ ଆଗ୍ରହ ।

ଏ ଯାବତ୍ ଲେଖକଙ୍କର ନିମ୍ନଲିଖିତ ପୁସ୍ତକ ସମ୍ପୂର୍ଣ୍ଣ :

**ନାଟକ**—ଶାନ୍ତି ସଂଗ୍ରାମ, ଆହୁତ, ଜୟୀ ରାଜଗୁରୁ, ସାଲବେଗ, ନିଶବ୍ଦ କୋଳାହଳ, ମୀରଜାଫର୍ ଜିନ୍ଦାବାଦ୍ (ପ୍ରକାଶନ ଅପେକ୍ଷାରେ) ।

**ଗଳ୍ପ ଓ ଉପନ୍ୟାସ**—ପଳାତକ ଓ ଅନ୍ୟମାନେ, ଏବଂ ଆଶ୍ଚର୍ଯ୍ୟ ନଗର, ଆହତ କପୋତ, କଂସ ଓ କୃଷ୍ଣ (ପ୍ରକାଶନ ଅପେକ୍ଷାରେ), ନିଷ୍କୃତି (ଜାତୀୟ ସଂହତି ମୂଳକ ଉପନ୍ୟାସିକା—ପ୍ରକାଶନ ଅପେକ୍ଷାରେ) ।

**ନିବନ୍ଧ**—ଢେଙ୍କାନାଳର ଗୌରବ (ଢେଙ୍କାନାଳ ପ୍ରବନ୍ଧ ମାଳା), ମାଡାମ୍ କ୍ୟୁରି (ଜୀବନ-କାହାଣୀ), ଅଳସ ମୁହୂର୍ତ୍ତର କବିତା (କବିତା ସଙ୍କଳନ), ଅଗ୍ନିଶିଖା (ଜନନାୟକ ପ୍ରାଣନାଥ ପଟ୍ଟନାୟକଙ୍କ ଜୀବନ କାହାଣୀ), ଗ୍ରସ୍ତ ସୂର୍ଯ୍ୟ (ସ୍ୱାଧୀନତା ସଂଗ୍ରାମୀ ଓ ସୁଲେଖକ ଦୟାନିଧି ମିଶ୍ରଙ୍କ ରୋମାଞ୍ଚକର ଜୀବନ-କାହାଣୀ—ପ୍ରକାଶନ ଅପେକ୍ଷାରେ), ଭକ୍ତକବି ସାଲବେଗ—ଏକ ଅଧ୍ୟୟନ (ଗବେଷଣାତ୍ମକ ନିବନ୍ଧ—ପ୍ରକାଶନ ଅପେକ୍ଷାରେ), ଢେଙ୍କାନାଳ-ପ୍ରଦୀପ (ଢେଙ୍କାନାଳ ପ୍ରବନ୍ଧ ମାଳା—ପ୍ରକାଶନ ଅପେକ୍ଷାରେ) ।

# ନିଃଶବ୍ଦ କୋଳାହଳ

ବା

# ଓ୍ୱାନଓ୍ୱେ ଟ୍ରାଫିକ୍ ବନ୍ଦକର

ଅମୂଲ୍ୟକୃଷ୍ଣ ମିଶ୍ର



ଅଗ୍ରଦୂତ

କଟକ-୨

# ନିଶବ୍ଦ କୋଲାହଳ
## ବା
# ଓ୍ୱାନ୍‌ୱେ ଟ୍ରାଫିକ୍ ବନ୍ଧକର


ନାଟ୍ୟକାର :

ଡକ୍ଟର ଅମୂଲ୍ୟକୃଷ୍ଣ ମିଶ୍ର



ପ୍ରଥମ ପ୍ରକାଶ—୧୯୮୯

ପ୍ରକାଶକ :

ଅଗ୍ରଦୂତ

ବାଙ୍କାବଜାର, କଟକ-୨





ମୁଦ୍ରଣ :

ସତ୍ୟସାଇ ପ୍ରେସ

କଟକ-୧

ମୂଲ୍ୟ—ତେର ଟଙ୍କା ମାତ୍ର


NISABDA KOLAHALA
(One way Traffic Bandhakar)


By
Dr. Amulya Krushna Misra



First Publication—1989

Publisher :
AGRADUTA
Bankabazar, Cuttack-2

Price : Rs. 13-00

# ଉତ୍ସର୍ଗ

ଜାତିର ଜନକ ପ୍ରିୟ ବାପୁଜୀ,

ତୁମର ଆଦର୍ଶରେ ଅନୁପ୍ରାଣିତ ହୋଇ
୧୯୨୧ରେ ମୋର ପିତା
ଉଚ୍ଚ ସରକାରୀ ଚାକିରୀରୁ ଇସ୍ତଫା ଦେଇ
କାରାବରଣ କରିଥିଲେ ।
୧୯୪୨ରେ ଜଣେ ସ୍କୁଲ୍ ଛାତ୍ର ଭାବରେ
ଭାରତ ଛାଡ଼ ଆନ୍ଦୋଳନରେ
ସକ୍ରିୟ ଅଂଶ ଗ୍ରହଣ କରି
ମୁଁ ପୋଲିସ ଦ୍ୱାରା ଅଟକ ହୋଇଥିଲି ।
ସେ ଦିନରୁ ତୁମର ବ୍ୟକ୍ତିତ୍ୱ
ମୋ ମନରେ ସୃଷ୍ଟି କରିଛି
ଏକ ଗଭୀର ଆଲୋଡ଼ନ ।
ମୁଁ ସରକାରୀ ଚାକିରୀରେ
ଯୋଗଦାନ କରି
ପାରମ୍ପରିକ ଭାବରେ ଦେଶସେବା
କରି ପାରିନାହିଁ ସତ୍ୟ,
କିନ୍ତୁ ତୁମର ଅତି ପ୍ରିୟ ଦର୍ଶନ
'ସତ୍ୟ, ନ୍ୟାୟ ଏବଂ ଅହିଂସା'
ମୁଁ ପାଳନ କରିବାକୁ ଚାହିଁଛି
ମୋର ବ୍ୟକ୍ତିଗତ ଜୀବନରେ ।
ବର୍ତ୍ତମାନର ଜଟିଳ ପରିବେଶରେ
ସେ ଦର୍ଶନ କାର୍ଯ୍ୟକାରୀ କରିବା ଦୁରୂହ ହେଲେ ମଧ୍ୟ
ମୁଁ ନିର୍ଭୀକଭାବରେ ତାହା ଅନୁସରଣ
କରି ଆସିଛି ।
ତୁମର ଅତି ପ୍ରିୟ ଭଜନ
"ଈଶ୍ୱର ଆଲ୍ଲା ତେରେ ନାମ"
ମୋ ମନରେ ସୃଷ୍ଟି କରିଛି ରୋମାଞ୍ଚ ।

'ଆମେ ସମସ୍ତେ ସମାନ'
'ପ୍ରଭୁ ଚକାଡୋଳାଙ୍କୁ ଦର୍ଶନ କରିବାର ଅଧିକାର
ସମସ୍ତଙ୍କର ଅଛି'—
ଏ ଧାରଣା ମୋ ମନରେ
ଦୃଢ଼ୀଭୂତ ହୋଇ ଯାଇଛି ।
ପ୍ରିୟ ବାପୁଜୀ,
ଦିନେ ତୁମେ ଦେଖିଥିଲ
ଅଖଣ୍ଡ ଭାରତର ସ୍ୱପ୍ନ ।
ସେହି ସ୍ୱପ୍ନରେ ବିଭୋର ହୋଇ
ତୁମେ ଆତତାୟୀର ଗୁଳିରେ
ପାଲଟି ଗଲ ଶହୀଦ ।
ଆଜି ଦେଶର ଅଖଣ୍ଡତାକୁ
ବଜାୟ ରଖିବାକୁ ହେଲେ
ଆମକୁ ଧର୍ମଜନିତ ଭେଦଭାବକୁ
ପରିହାର କରିବାକୁ ହେବ ।
ଆମ ଭିତରେ ଏ ଭାବନା
ଆଜି ସୃଷ୍ଟି କରିଛି ଏକ
ନିଶବ୍ଦ କୋଳାହଳ—
ଯାହାକୁ ଅହିଂସା ବିପ୍ଳବ ରୂପେ
ରୂପାୟିତ କରି ଆମକୁ
ଭାଙ୍ଗିବାକୁ ହେବ
ଓ୍ୱାନ୍ ୱେ ଟ୍ରାଫିକ୍‌ର ପ୍ରାଚୀର ।
ଏହି ଆଦର୍ଶକୁ ମୂଳପିଣ୍ଡ କରି
ଲିଖିତ ଏହି ନାଟକ
ତୁମ ଉଦ୍ଦେଶ୍ୟରେ ଟେକି ଦେଲି ।
ଏ ଅକିଞ୍ଚନର ନୈବେଦ୍ୟ
ଗ୍ରହଣ କର ବାପୁଜୀ ।

ଅମୂଲ୍ୟ



**ପଢନ୍ତେ ଅଧେ !**

ଗତ ଦଶବର୍ଷ ହେଲା ଅର୍ଥାତ୍ ୧୯୭୮ରୁ ଏହି ନାଟକ ରଚନା କରିବା ପାଇଁ ମନସ୍ଥ କରିଥିଲି—ଠିକ୍ ସାଲବେଗ ନାଟକ ରଚନା କରି-ସାରିବା ପରେ ପରେ । ପ୍ରଭୁ ଜଗନ୍ନାଥ ଯେ ଜାତି ଧର୍ମ ବର୍ଣ୍ଣ ନିର୍ବିଶେଷରେ ସମସ୍ତଙ୍କର ଭଗବାନ—ଏହି ଧାରଣା ସାଲବେଗଙ୍କ ବିଷୟରେ ଗବେଷଣା କରିବା ସମୟରେ ମୋ ମନରେ ଦୃଢ଼ୀଭୂତ ହେଲା । ସନାତନ ଧର୍ମର ଓ୍ୱାନ୍ ଓ୍ୱେ ଟ୍ରାଫିକ୍ ଯେ ଆମ ଜାତି ଧର୍ମ ଓ ଦେଶ ପାଇଁ କ୍ଷତିକାରକ—ଏହା କେବଳ ନିଜେ ହୃଦୟଙ୍ଗମ କଲେ ହେବନାହିଁ ବରଂ ଏହାକୁ ପ୍ରକାଶ କରି ଜନମତ ସୃଷ୍ଟି କରିବା ସବୁ ବୁଦ୍ଧିଜୀବୀଙ୍କ କର୍ତ୍ତବ୍ୟ ବୋଲି ମୋର ମନେ ହେଲା । ନାଟକର ଖସଡ଼ା ତିଆରି କଲି । ଓ୍ୱାନ୍ ଓ୍ୱେ ଟ୍ରାଫିକ୍ ବନ୍ଦ କରିବାର ନିଶବ୍ଦ କୋଳାହଳକୁ ଏକ ସଶବ୍ଦ ବିପ୍ଳବରେ ପରିଣତ କରିବାର ବାସନା; କିନ୍ତୁ ପୂରଣ ହୋଇ ପାରିଲା ନାହିଁ—ମୁଁ ନେଖାର୍ଡ଼ିର ସମସ୍ୟା ବହୁଳ ପ୍ରାଣନାଥ କଲେଜର ବିଭିନ୍ନ ସମସ୍ୟାରେ ମନୋନିବେଶ କରି ନାଟକ ରଚନା ଆରମ୍ଭ କରିପାରି ନ ଥିଲି ।

ଭୁବନେଶ୍ୱର : ୧୫-୬-୧୯୮୧ ରଜସଂକ୍ରାନ୍ତି ଦିନ ପୁଣି କଲମ ଚାଳନ କଲି । କିଛିଦିନ ନାଟକକୁ ରୂପରେଖ ଦେବାରେ ଲାଗିପଡ଼ିଲି । ସାମାନ୍ୟ କିଛି ଅଗ୍ରଗତି ହେଲା । ପୁଣି ପଡ଼ିଲା କାମର ଭିଡ଼ । କିଛିଦିନ ନାଟକ ଲେଖା ବନ୍ଦ ହେଲା ଏବଂ ଯେଉଁ ନୋଟ୍‌ବୁକ୍‌ରେ ଲେଖା ଆରମ୍ଭ କରିଥିଲି ତାହା ହଜିଗଲା । ବହୁତ ଖୋଜା ଖୋଜି ପରେ ଖାତା ନ ମିଳିବାରୁ ଆଉଥରେ ଖସଡ଼ା ପ୍ରସ୍ତୁତ କରିବି ବୋଲି ମନସ୍ଥ କଲି । ତା ପରେ ଚାଲିଲା କିଛିଦିନ ପାଇଁ ଚାକିରି ଜୀବନରେ ଝଡ଼—ଏଇଠୁ ସେଠାକୁ, ସେଇଠୁ ଏଠାକୁ ଏମିତି ଘନ ଘନ ବଦଳି । ନାଟକ ବିଷୟ ପ୍ରାୟ ଭୁଲିଗଲି ।

୧୯୮୭ ଜୁଲାଇରେ ରାଜଧାନୀ କଲେଜରେ ଶିକ୍ଷକଭାବେ ଯୋଗଦାନ କରିବା ପରଠାରୁ ପୁଣି ଲେଖାଲେଖିରେ ମନଦେଲି । ଦିନେ (୧୬।୧୨।୮୭) ପୁରୁଣା କାଗଜ ଖେଳାଉ ଖେଳାଉ ଦୈବାତ୍ ପୁରୁଣା ଖସଡ଼ା ଥିବା ଖାତା ମିଳିଗଲା ।

ସେ ଦିନରୁ ପୁଣି ଚାଲିଲା ଖସଡ଼ା ଉପରେ କୁସ୍ତି କସରତ । ନୂଆ ନୂଆ ଘଟଣା ପ୍ରବେଶ କଲା ଖସଡ଼ା ଭିତରେ । ମଣ୍ଟିଂ ଓ୍ୱାର୍କ ସମ୍ବନ୍ଧରେ ନୂଆ ନୂଆ ଭାବନା ମନରେ ଉଙ୍କିମାରିଲା । ବହୁତ ଦିନରୁ ହଜଯାଇଥିବା ଖସଡ଼ାକୁ ପାଇ ଆଉ ଛାଡ଼ି ପାରିଲି ନାହିଁ । ସବୁ କାମସତ୍ତ୍ୱେ ନାଟକଲେଖା କାମ ଚାଲି ରହିଲା ଏବଂ ଦାଣ୍ଡି ପଦଯାତ୍ରାର ୫୮ ତମ ବାର୍ଷିକୀ ଦିନ ଅର୍ଥାତ୍ ୧୨ । ୩ । ୧୯୮୮ରେ ବ୍ରହ୍ମମୁହୂର୍ତ୍ତରେ ପ୍ରାୟ ସାଢ଼େ ପାଞ୍ଚଟାବେଳେ ଲେଖା ଶେଷ ହେଲା । ତେଣୁ ଏହି ସଂସ୍କାରମୂଳକ ନାଟକ ଲେଖିବାରେ ବହୁତ ବିଘ୍ନ ଦେଖା ଦେଇଥିଲା ଏବଂ ଲେଖିବାର ସ୍ୱପ୍ନ ବାସ୍ତବରେ ପରିଣତ ହେବା ପାଇଁ ପ୍ରାୟ ଦଶ ବର୍ଷ ଲାଗିଗଲା ।

ପ୍ରଥମେ ଭାବିଥିଲି ପାରମ୍ପାରିକ ନାଟକ ଲେଖିବି, ମୋର ପୂର୍ବରୁ ଲେଖିଥିବା ନାଟକଗୁଡ଼ିକ ଭଳିଆ । ତାପରେ ଭାବିଲି ବୋଧହୁଏ ନୂଆ ଟେକ୍ନିକ୍‌ରେ ନାଟକ ଲେଖିଲେ ଭାବଧାରାକୁ ପ୍ରକାଶ କରିବାରେ ବେଶି ମାତ୍ରାରେ ସମର୍ଥ ହେବି । କିଛି କିଛି ନୂତନ ଢାଞ୍ଚାରେ ନାଟକ ପଢ଼ିଥିଲି ଓ ଦେଖିଥିଲି । ମୁଁ ଜାଣେନା ମୋର ଟେକ୍ନିକ୍ ଆଧୁନିକ ନା ନୁହେଁ, ଉଦ୍ଭଟ ନା ନୁହେଁ—ତେବେ ମୋ ଭାବଧାରାକୁ ସୁହାଇଲା ଭଳିଆ ଏକ ଟେକ୍ନିକ୍ ନିଶ୍ଚୟ । ବୋଧହୁଏ କିଛିଟା ପାରମ୍ପରିକ ଆଉ କିଛିଟା ଉଦ୍ଭଟ ।

ବର୍ତ୍ତମାନ ଧର୍ମନିରପେକ୍ଷତା ସହିଷ୍ଣୁତା ଓ ଉଦାରତା ଯେ ନିତାନ୍ତ ଦରକାର ତାହା ସମସ୍ତେ କହୁଛନ୍ତି; କିନ୍ତୁ ସେ ସହିଷ୍ଣୁତା ଓ ଉଦାହରଣ ଦେଖାଉଛନ୍ତି କେତେଜଣ ? ବର୍ତ୍ତମାନ ଦେଶର ଅଖଣ୍ଡତା ଅପେକ୍ଷା ନିଜ ନିଜ ଭାଷା ଓ ଧର୍ମର ମର୍ଯ୍ୟାଦା ବିଷୟରେ ଅନେକ ଚିନ୍ତାଶୀଳବ୍ୟକ୍ତି ମଧ୍ୟ ବେଶି ଚିନ୍ତିତ—ଏହା ଏକ ଅଶୁଭ ସଙ୍କେତ । ଦେଶର ଅଖଣ୍ଡତା ପାଇଁ ଆମ ସମସ୍ତଙ୍କୁ କିଛି କିଛିଟା ସ୍ୱାର୍ଥତ୍ୟାଗ କରିବାକୁ ହେବ—ଯେତିକି ମୂଲ୍ୟ ଦେବାକୁ ହେଲେ ମଧ୍ୟ ତାହା ଆମକୁ ଦେବାକୁ ପଡ଼ିବ ଦେଶର ସଂହତି ପାଇଁ । ଏହି ଲକ୍ଷ୍ୟ ହାସଲ କରିବା ଦିଗରେ ଏହି ନାଟକ ଏକ ନିର୍ଦ୍ଦିଷ୍ଟ ପଦକ୍ଷେପ । ମୋର ଆଶା, ସୁଧୀ ପାଠକପାଠିକା ମୋର ଅନ୍ତରର ବେଦନା ହୃଦୟଙ୍ଗମ କରି ପାରି ସମାଜ ସଂସ୍କାର କରିବା ପାଇଁ ଆଗେଇ ଆସିବେ ।

ଏହି ନାଟକର ସହାୟକ ଚରିତ୍ର ( Supporting character ) ରୂପେ ସାନ୍ତାନେବର, କଳାପାହାଡ଼, ମୁକୁନ୍ଦଦେବ, ନରସିଂହଦେବ, ଦିକ୍ଷାପ୍ଷ

ରାମଚନ୍ଦ୍ର ଦେବ, ଆଉରଙ୍ଗଜେବ, ଜହ୍ନା ପ୍ରଭୃତି ବିଭିନ୍ନ ବାସ୍ତବିକ ଚରିତ୍ରକୁ ରଙ୍ଗମଞ୍ଚକୁ ଅଣାଯାଇଛି । ସେଗୁଡ଼ିକକୁ ଗୋଟିଏ ଗୋଟିଏ ପ୍ରତୀକ ( Symbol ) ରୂପେ ବ୍ୟବହାର କରାଯାଇଛି । ଜନ୍, ଆଜାଦ୍, ରମାକାନ୍ତ, ଗୁର୍ଲିସ୍, ମୌଲଭୀ, ପଣ୍ଡା ପ୍ରଭୃତି ହେଉଛନ୍ତି ଆଉରଙ୍ଗଜେବ୍ ଗୋଷ୍ଠୀର—ସେ ସମସ୍ତେ ହେଲେ ଖଳ ଚରିତ୍ର ( Evil Character ) । ପ୍ରଭୁଦତ୍ତ, ନଜରୁଲ୍, ହାସିନା, ପିଟର, ବଲ୍ଭୀର, ମାୟା ପ୍ରଭୃତି ହେଉଛନ୍ତି ସାଲବେଗ ଗୋଷ୍ଠୀର—ସେ ସମସ୍ତେ ହେଲେ ଆଦର୍ଶ ଚରିତ୍ର ( Ideal character ) ।

ଭଲ ମନ୍ଦର ସଂଗ୍ରାମ ହୋଇଛି । ହିଂସା—ଅହିଂସାର ମୁକାବିଲା ହୋଇଛି । ଶେଷରେ ଭଲ ଓ ଅହିଂସାର ବିଜୟ ହୋଇଛି ଏବଂ ମନ୍ଦ ଓ ହିଂସାର ବିଳୟ ଘଟିଛି । ଏହା ହେଉଛି ଏ ନାଟକର ଦିଗ୍‌ଦର୍ଶନ । କୌଣସି ଜାତି ଧର୍ମ କିମ୍ବା ବର୍ଣ୍ଣର ଲୋକ ନିର୍ଦ୍ଦିଷ୍ଟ ଭାବରେ ଭଲ କିମ୍ବା ନିର୍ଦ୍ଦିଷ୍ଟ ଭାବରେ ଖରାପ ନୁହନ୍ତି । ସବୁ ଧର୍ମ ଓ ସବୁ ଗୋଷ୍ଠୀରେ ଭଲ ମଣିଷ ଅଛନ୍ତି ଏବଂ ମନ୍ଦ ମଣିଷ ବି ଅଛନ୍ତି । ତେଣୁ ମନ୍ଦ ମଣିଷ ଭାବରେ ଚିତ୍ରଣ କରାଯାଇଥିବା ଚରିତ୍ର ସବୁ ବିଭିନ୍ନ ଧର୍ମ ଓ ବିଭିନ୍ନ ଗୋଷ୍ଠୀର ଅନ୍ତର୍ଭୁକ୍ତ ଅଟନ୍ତି । ସେପରି ଭଲ ମଣିଷ ଭାବରେ ଚିତ୍ରଣ କରାଯାଇଥିବା ଚରିତ୍ର ସବୁ ମଧ୍ୟ ବିଭିନ୍ନ ଧର୍ମ ଓ ବିଭିନ୍ନ ଗୋଷ୍ଠୀର ଅନ୍ତର୍ଭୁକ୍ତ ଅଟନ୍ତି । ତେଣୁ କୌଣସି ନିର୍ଦ୍ଦିଷ୍ଟ ଧର୍ମ ବା ଗୋଷ୍ଠୀର ଲୋକେ ଏ ନାଟକର ଚରିତ୍ର ଦେଖି ଭୁଲ ବୁଝାମଣା କରିବେନାହିଁ ବୋଲି ମୋର ଆଶା ।

ଏହି ନାଟକ ରଚନା କରିବାରେ ମୋର ସହଧର୍ମିଣୀ ଶ୍ରୀମତୀ ଶୈଳବାଳା ମିଶ୍ର ଯଥୋଚିତ ପ୍ରେରଣା ଦେଇଥିବାରୁ ସେ ମୋର ଧନ୍ୟବାଦର ପାତ୍ର । ଏହି ନାଟକ ପ୍ରକାଶ କରିବା ପାଇଁ ଉତ୍ସାହ ପ୍ରଦାନ କରିଥିବାରୁ ମୋର ବନ୍ଧୁ ବିଶିଷ୍ଟ ସାହିତ୍ୟିକ ଶ୍ରୀ ଶରତକୁମାର ମହାନ୍ତି ମୋର ଧନ୍ୟବାଦାର୍ହ । ଏହି "ନିଶବ୍ଦ କୋଳାହଳ" ଯଦି ଏକ ସଶବ୍ଦ ବିପ୍ଳବ ସୃଷ୍ଟି କରିବାରେ ସାହାଯ୍ୟ କରେ, ମୋର ଶ୍ରମ ସାର୍ଥକ ହେଲା ବୋଲି ମନେ କରିବି ।

ଉତ୍କଳ ଦିବସ
୧ । ୪ । ୮୮

ଅମୂଲ୍ୟକୃଷ୍ଣ ମିଶ୍ର

## ପ୍ରସ୍ତାବନା

# ଧର୍ମର ରଙ୍ଗ କଳା ନୁହେଁ

● ଧର୍ମର ରୂପ ଓ ରଙ୍ଗ :

ବୈଜ୍ଞାନିକ ମତରେ କଳା ବୋଲି କୌଣସି ରଙ୍ଗ ନାହିଁ । ଯେଉଁ ବସ୍ତୁ ସବୁ ରଙ୍ଗକୁ ଶୋଷିନିଏ ତାହା ହେଉଛି କଳା । ଏହି କୃଷ୍ଣ ବସ୍ତୁ ( Black body )ର ଏକ ବୈଜ୍ଞାନିକ ଗୁରୁତ୍ୱ ଅଛି । ଏହା ପୂର୍ଣ୍ଣମାତ୍ରାରେ ଅବଶୋଷଣ କରି ପାରେ ଏବଂ ପୂର୍ଣ୍ଣମାତ୍ରାରେ ବିକିରଣ ମଧ୍ୟ କରି ପାରେ । ତେଣୁ ସମ୍ଭବତଃ ଆମର ପୂର୍ବ ପୁରୁଷମାନେ ଜଗନ୍ନାଥଙ୍କୁ ଚିପଣ୍ଡ କଳା କରି ଗଢ଼ିଛନ୍ତି । କାରଣ ସେ ଜଗତର ନାଥ ହୋଇ ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ସମସ୍ତଙ୍କୁ ଗ୍ରହଣ କରିବେ ଏବଂ ଜାତି ଧର୍ମ-ବର୍ଣ୍ଣ ନିର୍ବିଶେଷରେ ସମସ୍ତଙ୍କୁ କରୁଣା ବିତରଣ କରିବେ । ଜଗନ୍ନାଥଙ୍କ ହାତ ଦୁଇଟି ସମାନ୍ତରାଳ ଭାବରେ ରହି ଦୂରଆସାକର ଭକ୍ତଙ୍କୁ ଆଲିଙ୍ଗନ କରିବା ପାଇଁ ହସ୍ତ ପ୍ରସାରଣ କରିଛନ୍ତି । ଏହି ଫଳାର ଯଥାର୍ଥତା ଯେ ଆମେ ଧୀରେ ଧୀରେ ହୃଦୟଙ୍ଗମ କରି ପାରୁଛୁ ତାହା ଏକ ସୌଭାଗ୍ୟର କଥା ବୋଲି ମନେ ହୁଏ ଯଦିଓ ଏହା ବସ୍ତୁତଃ କାର୍ଯ୍ୟକାରୀ ହୋଇପାରୁନାହିଁ ।

ଧର୍ମର ରଙ୍ଗ ନିଶ୍ଚିତ ଭାବେ ଧଳା—Spot less white—ଏଥିରେ ସନ୍ଦେହର ଅବକାଶ ନାହିଁ । ଏହି ଧଳାରୁ ହେଉଛି ସବୁ ରଙ୍ଗର ଉତ୍ପତ୍ତି—ଲାଲ୍ ଠାରୁ ବାଇଗଣୀ ପର୍ଯ୍ୟନ୍ତ । ଆମେ ବିଭିନ୍ନ ରଙ୍ଗର ଚଷମା ଲଗାଇ ଅର୍ଥାତ୍ ବିଭିନ୍ନ କିସମର ମନୋଭାବ ନେଇ ଧର୍ମକୁ ବ୍ୟବହାର କରୁ । ତେଣୁ ଧର୍ମ ବିଭିନ୍ନ ବ୍ୟକ୍ତିବିଶେଷଙ୍କୁ ବିଭିନ୍ନ ରଙ୍ଗରେ ଅବଗତ ହୁଏ । ଯେ ଧର୍ମକୁ ଉଗ୍ର ରୂପରେ ବ୍ୟବହାର କରେ ସେ ହୁଏତ

ରକ୍ତବର୍ଣ୍ଣର ଚଷମା ବ୍ୟବହାର କରେ ଏବଂ ଯେ ତାକୁ ଶାନ୍ତିର ଆବାସ ବୋଲି ବିଚାର କରେ ତା'ର ଚଷମା ହୁଏତ ସବୁଜ ବର୍ଣ୍ଣର । ସେପରି ବିଭିନ୍ନ ବ୍ୟକ୍ତିବିଶେଷ ଏବଂ ଗୋଷ୍ଠୀ ନିଜ ନିଜ ମତ ଅଭିବ୍ୟକ୍ତ କରି ଧର୍ମକୁ ଭିନ୍ନ ଭିନ୍ନ ରଙ୍ଗରେ ଦେଖିଥାନ୍ତି । ପ୍ରଭୁ ଜଗନ୍ନାଥ ତାଙ୍କ ଧଳା ଚଷମାରେ ଅର୍ଥାତ୍ ଧଳା ଧଳା ଆଖିରେ ଧର୍ମକୁ ସର୍ବବ୍ୟାପୀ ବୋଲି ଅଭିବ୍ୟକ୍ତ କରନ୍ତି ଏବଂ ସବୁ ଧରଣର ବ୍ୟକ୍ତିବିଶେଷଙ୍କୁ ନିଜର ବାହୁଯୁଗ୍ମ ତଳେ ଶରଣ ପ୍ରଦାନ କରନ୍ତି—ତେଣୁ ତାଙ୍କର ନାମକରଣ ହୋଇଛି ଜଗତର ନାଥ ପ୍ରଭୁ ଜଗନ୍ନାଥ । ଜଗନ୍ନାଥ ଏକ ବିଗ୍ରହ ନୁହନ୍ତି । ସେ ଏକ ପ୍ରତୀକ— ଶାନ୍ତି ଓ ସହାବସ୍ଥାନର ପ୍ରତୀକ ।

ଯେଉଁମାନେ ଧର୍ମର ଧାର ଧାରନ୍ତି ନାହିଁ ଅର୍ଥାତ୍ ବୃତ୍ତିଗତ କର୍ମ-ସାଧନ ବ୍ୟତୀତ ଧର୍ମ ସମ୍ବନ୍ଧିତ ଯାହାର କୌଣସି ସମ୍ପର୍କ ନାହିଁ, ସେମାନଙ୍କୁ ସମ୍ଭବତଃ ଲୋଭ ଗ୍ରାସକରେ ଏବଂ ନିଜ ସ୍ୱାର୍ଥ ସିଦ୍ଧି ପାଇଁ ଗୋଟିଏ କଳା ଚଷମାର ଉହାଡ଼ରେ ଧର୍ମକୁ ନିଜେ ଦେଖନ୍ତି ଏବଂ ଅନ୍ୟମାନଙ୍କୁ ଦେଖାଇବାକୁ ପ୍ରଚେଷ୍ଟା କରନ୍ତି । ଧର୍ମର ଉଗ୍ରତା ଏବଂ ଉତ୍ପୀଡ଼ନରୁ ନିଜକୁ ଏବଂ ଦେଶକୁ ରକ୍ଷା କରିବାକୁ ହେଲେ କତିପୟ ଉଗ୍ରପନ୍ଥୀ ଧାର୍ମିକ ମୌଳିକବାଦୀ ( ଯେଉଁମାନେ ଲାଲରଙ୍ଗର ଚଷମାରେ ଧର୍ମକୁ ରକ୍ତ ବର୍ଣ୍ଣରେ ରଞ୍ଜିତ କରିଛନ୍ତି ) ଏବଂ କତିପୟ ଭଣ୍ଡ ସେବକ ( ଯେଉଁମାନେ ଲୋଭ ରୂପକ କଳା ଚଷମାରେ ଧର୍ମକୁ କଳା ବୋଲି ପରିଚିତ କରାଉଛନ୍ତି— ସେମାନଙ୍କ କବଳରୁ ଧର୍ମକୁ ରକ୍ଷା କରିବାକୁ ହେବ କଳେ ବଳେ କୌଶଳେ ।

ବର୍ତ୍ତମାନର ଆଲୋଚ୍ୟ ବିଷୟ ହେଲା ଧାର୍ମିକ ଅସହିଷ୍ଣୁତା । ଏହା କେବଳ ଧର୍ମ ଧର୍ମ ମଧ୍ୟରେ ପରିସ୍ଫୁଟ ହୋଇ ବିଭିନ୍ନ ମତାବଲମ୍ବୀମାନଙ୍କ ସହାବସ୍ଥାନର ମୂଳଦୁଆକୁ ଦୋହଲାଉ ନାହିଁ, ଏହାର ପ୍ରଭାବରେ ଗୋଟିଏ ଧର୍ମର ବିଭିନ୍ନ ଗୋଷ୍ଠୀ ମଧ୍ୟରେ ଅନାଚାର ଏବଂ ଅତ୍ୟାଚାରର ମାତ୍ରା ବୃଦ୍ଧିଲାଭ କରୁଛି ମଧ୍ୟ । ପୃଥିବୀର ସବୁଠାରୁ ପ୍ରାଚୀନ ଧର୍ମ ସନାତନ ଧର୍ମରେ ଏହି ସ୍ୱେଚ୍ଛାଚାରିତାର ମାତ୍ରା ସୀମା ପାର କରି ସାରିଲାଣି ।

ବୈଦ ଏବଂ ଉପନିଷଦର ଆଦର୍ଶରେ ପରିଚାଳିତ ଧର୍ମ ଏବେ ନିଶ୍ଚିତଭାବରେ ବିପଥଗାମୀ ହେଲାଣି ଏଥିରେ ସନ୍ଦେହର ଅବକାଶ ନାହିଁ । ଆମର ଧର୍ମର ଦର୍ଶନ ହେଲା ସମସ୍ତଙ୍କୁ ସ୍ନେହ ଓ ଆଦର କରିବା । ଦୟା ପ୍ରଦର୍ଶନ କରିବା ଏବଂ ସମସ୍ତଙ୍କୁ ସମାନ ବୋଲି ପରିଗଣନା କରିବା । ଜନ୍ମରୁ ଉଚ୍ଚ ନୀଚ ବୋଲି ବିଚାର କରିବା ସମସ୍ତ ଧର୍ମ ଧାରଣାର ବହିର୍ଭୂତ । ସମସ୍ତଙ୍କ ଶରୀରରେ ଈଶ୍ୱର ବିରାଜମାନ—ଏହା ଆମର ଧର୍ମଧାରାରେ ଅତି ନିଗୁଢ଼ ଭାବରେ ବିଦ୍ୟମାନ କିନ୍ତୁ ଆମେ କର୍ମ କ୍ଷେତ୍ରରେ କରୁଛୁ କ'ଣ ? ଆଜି ଆମର ନୈତିକ ଅଧୋପତନ ଘଟି ସମାଜରେ ଯେଉଁ ବାଛ ବିଚାର ଚାଲିଛି ଧର୍ମାନୁଷ୍ଠାନମାନଙ୍କରେ ସେହି ବାଛ ବିଚାର ପ୍ରତିଫଳିତ ହେଉଛି ମାତ୍ର । ଏହି ବାଛ ବିଚାରର ସମୂଳୋତ୍ପାଟନ କରିବା ଆମର କର୍ତ୍ତବ୍ୟ ।

## ● ଅବିଚାରର ପରିଣତି :

ଏହା କହିବା ବାହୁଲ୍ୟ ଯେ ଆମ ଦେଶରେ ବିଭିନ୍ନ ମନ୍ଦିରରେ ମନ୍ଦିରର ତଥାକଥିତ ରକ୍ଷକଙ୍କ ଦ୍ୱାରା ଉତ୍ପୀଡ଼ନ ଚାଲିଛି ଏବଂ ଏହାର ଶିକାର ହେଉଛନ୍ତି ଅଗଣିତ ଧର୍ମପ୍ରାଣ ଭଗବାନ ଦର୍ଶନାଭିଳାଷୀ ଭକ୍ତଗଣ । ମନ୍ଦିର ସେବକମାନଙ୍କର ଉତ୍ପୀଡ଼ନରେ ଅତିଷ୍ଠ ହୋଇ ଦକ୍ଷିଣଭାରତରେ ଅଧିକାଂଶ ମନ୍ଦିରରେ ଅବ୍ରାହ୍ମଣମାନେ ତାଲିମପ୍ରାପ୍ତ ହୋଇ ସେବକ ଭାବରେ ନିଯୁକ୍ତ ହୋଇଛନ୍ତି ଏବଂ ଅନେକ କ୍ଷେତ୍ରରେ ମନ୍ଦିରର ସୁପରିଚାଳନା ଭାର ସରକାର ନିଜ ହାତକୁ ନେଇଛନ୍ତି । ତେଣୁ ସେ ଅଞ୍ଚଳର ମନ୍ଦିରମାନଙ୍କରେ ସେବକ ସମ୍ପ୍ରଦାୟର ଠକାମି ଭଣ୍ଡାମିର ଶିକାର ହେବାକୁ ଭକ୍ତମାନଙ୍କୁ ପଡ଼ି ନ ଥାଏ । ଏପରିକି ପଶ୍ଚିମ ଓଡ଼ିଶାର ସମଲେଶ୍ୱରୀ ଏବଂ ମହାଦେବ ମନ୍ଦିରମାନଙ୍କରେ ଯଥାକ୍ରମେ ଆଦିବାସୀ ସମ୍ପ୍ରଦାୟର ଏବଂ ଅବ୍ରାହ୍ମଣ ସଂପ୍ରଦାୟର ସେବକମାନେ ନିଯୁକ୍ତ ହୋଇଥିବାରୁ ସେମାନେ ଭକ୍ତମାନଙ୍କ-ଠାରୁ ଦକ୍ଷିଣା, ଭୋଗ ପ୍ରଭୃତି ଅଯଥା ଦାବୀ କରିବାର ଦେଖାଯାଏ ନାହିଁ । ସମ୍ବଲପୁରର ମହାନଦୀକୂଳରେ ଅବସ୍ଥିତ ବିଖ୍ୟାତ ସମଲେଶ୍ୱରୀ ମନ୍ଦିରରେ ଦଶହରା ସମୟରେ ସହସ୍ରାଧିକ ଭକ୍ତଙ୍କ ସମାବେଶ ହେଉଥିଲେ ମଧ୍ୟ କୌଣସି ସେବକ ଦକ୍ଷିଣା ଦାବୀକରିବାର କିମ୍ବା ଭକ୍ତମାନଙ୍କୁ ଅସୌଜନ୍ୟ

ବ୍ୟବହାର ଦେଖାଇବାର ଜଣାଯାଇନାହିଁ; କିନ୍ତୁ କାଶୀର ବିଶ୍ୱନାଥମନ୍ଦିର ହେଉ ବା ପୁରୀର ଶ୍ରୀମନ୍ଦିର ହେଉ, ଏହି ସେବକ ଗୋଷ୍ଠୀଙ୍କ ଅଶୋଭନୀୟ ବ୍ୟବହାର ଏବଂ ଦକ୍ଷିଣାଦାବୀ ଭକ୍ତମାନଙ୍କ ମନରେ ଗଭୀର ରେଖାପାତ କରି ଆସିଛି ଏବଂ ଅନେକ ସମୟରେ ଜନସାଧାରଣଙ୍କୁ ବିଶେଷତଃ ଅନ୍ୟ ପ୍ରଦେଶରୁ ଆଗତ ଭକ୍ତଙ୍କୁ ମୁଖ୍ୟତଃ ମହିଳାମାନଙ୍କୁ ଅସ୍ୱାଭାବିକ ପରିସ୍ଥିତିର ସମ୍ମୁଖୀନ ହେବାକୁ ପଡ଼ୁଛି । କଟକର କଟକଚଣ୍ଡୀ ମନ୍ଦିରରେ ମଧ୍ୟ ଭୋଗ ପରିମାଣର ଏକ ଚଢ଼ାଉ ଦକ୍ଷିଣା ଦାବୀରେ ଭକ୍ତମାନେ ଅତିଷ୍ଠ ହେଲେ ମଧ୍ୟ ନୀରବରେ ସହ୍ୟକରି ଆସୁଛନ୍ତି । ସବୁଠାରୁ ଦୁଃଖର ବିଷୟ ଏହି ଯେ, ଏହି ଦୌରାତ୍ମ୍ୟ ଏବଂ ଦକ୍ଷିଣା ଦାବୀ ସେବକମାନଙ୍କର ଜନ୍ମଗତ ଅଧିକାର ବୋଲି ସେମାନଙ୍କ ଧାରଣା ରହିଛି ଏବଂ ଦକ୍ଷିଣାର ଅର୍ଥ ମନ୍ଦିର ପରିଚାଳନାରେ ବ୍ୟବହୃତ ନ ହୋଇ ସେବକ ମାନଙ୍କ ପକେଟସ୍ଥ ହେଉଛି । ଆଶ୍ଚର୍ଯ୍ୟର କଥା ଏହି ଯେ, ଏହାର ସାମାଜିକ ପ୍ରତିରୋଧ କିମ୍ବା ସରକାରୀ ପ୍ରତିକାର ବିଷୟରେ କେହି ଧ୍ୟାନ ନ ଦେଇ ଏ ସବୁକୁ ମାମୁଲି କଥା ଅଥବା ମନ୍ଦିରର ଆଭ୍ୟନ୍ତରୀଣ ବ୍ୟାପାର ବୋଲି ଭାବି ଜନସାଧାରଣ ତଥା ସରକାର ନିଷ୍କ୍ରିୟ ରହିଛନ୍ତି । ତେଣୁ ମନ୍ଦିର ବେଢ଼ାମାନଙ୍କରେ ଦୌରାତ୍ମ୍ୟ ଏବଂ ଯଥେଚ୍ଛାଚାରର ମାତ୍ରା ବଢ଼ି ବଢ଼ି ଚାଲିଛି ।

ଏହି ପରିପ୍ରେକ୍ଷୀରେ ୧୯୮୭ ଡିସେମ୍ବର ଶେଷ ସପ୍ତାହରେ କଟକସ୍ଥ ଜଣେ ଅଧ୍ୟାପିକା ତାଙ୍କର ପୁଣେସ୍ଥିତ ଆଉ ଜଣେ ଅଧ୍ୟାପିକା ବାନ୍ଧବୀଙ୍କ ସହିତ ଶ୍ରୀମନ୍ଦିର ଦର୍ଶନ କରିବା ସମୟରେ କେତେକ ସେବକଙ୍କ ଦ୍ୱାରା ଅପମାନିତ ହେବା ଅଭିଯୋଗ ବିଚାରଯୋଗ୍ୟ । ଅବଶ୍ୟ ଏହାର ପ୍ରକୃତ ସତ୍ୟାସତ୍ୟ ଏକ ନିରପେକ୍ଷ ତଦନ୍ତ ଦ୍ୱାରା ଉଦ୍‌ଘାଟିତ ହେବ ଏବଂ ଏ ଦିଗରେ ଆଉ ବିଳମ୍ବ ନ କରି ପ୍ରକୃତ ତଥ୍ୟ ଉଦ୍‌ଘାଟନ କରାଯିବା ସେବକ ଏବଂ ଭକ୍ତ ଉଭୟଙ୍କ ପାଇଁ ହିତକର; କିନ୍ତୁ ଏହା କହିବା ବାହୁଲ୍ୟ ଯେ ପ୍ରତିଦିନ ସେବକ ବେଶଧାରୀ ଅନେକ ବ୍ୟକ୍ତିବିଶେଷ ଭକ୍ତମାନଙ୍କୁ ବିଭିନ୍ନ ମାତ୍ରାରେ ହଇରାଣ ହରକତ କରୁଛନ୍ତି—ଏହି ଉକ୍ତି ଅପ୍ରିୟ ହେଲେ ମଧ୍ୟ ସତ୍ୟ, ମୋର ଶତାଧିକବାର ଶ୍ରୀମନ୍ଦିର ଦର୍ଶନର ଏହା ଏକ ପ୍ରତ୍ୟକ୍ଷ ଅନୁଭୂତି ।

ମଣ୍ଡା ଦେଖିଲେ ଶାଗୁଣାପଲ ଧାଇଁ ଆସିଲାପରି ଭଗବାନଙ୍କ ଦର୍ଶନାଭିଳାଷୀ ଭକ୍ତମାନଙ୍କ ପଛରେ ଦଳେ ଲୋକ ଲାଗିଯାନ୍ତି ଭକ୍ତମାନେ ସିଂହଦ୍ୱାରରେ ପହଞ୍ଚୁ ପହଞ୍ଚୁ । ଏମାନେ ପ୍ରକୃତରେ ମନ୍ଦିର ସେବକ କି ନୁହେଁ ତାହା ଜାଣିବା ଜନସାଧାରଣଙ୍କ କ୍ଷମତାର ବହିର୍ଭୂତ କାରଣ ସେମାନେ ସ୍ୱଚ୍ଛନ୍ଦରେ ବିନା ବାଧାରେ ଭକ୍ତମାନଙ୍କୁ ହଇରାଣ ହରକତ କରିଥାନ୍ତି । ଏମାନଙ୍କ କବଳରୁ ରକ୍ଷା ପାଇବାପାଇଁ ନିୟମିତ ଭକ୍ତମାନଙ୍କର ସାଧାରଣତଃ ଅସୁବିଧା ହୋଇ ନ ଥିଲେ ମଧ୍ୟ ଅନେକ ନୂତନ ଯାତ୍ରୀ ଏମାନଙ୍କ ହାବୁଡ଼ରୁ ବର୍ତ୍ତି ନ ପାରି ହଇରାଣ ହରକତ ହୋଇଥାନ୍ତି ଏବଂ ବିଶେଷଭାବରେ ଖର୍ଚ୍ଚାନ୍ତ ହୋଇଥାନ୍ତି । ତାପରେ ମନ୍ଦିର ବେଢ଼ା ଭିତରେ ସେବକମାନଙ୍କ ଦକ୍ଷିଣା ଦାବୀ ଏବଂ ଦୌରାତ୍ମ୍ୟ ଏକ ନିତିଦିନିଆ ଘଟଣା ହୋଇଗଲାଣି । କେହି ଏଥିର ଉତ୍ପୀଡ଼ନର ପ୍ରତିବାଦ କଲେ ୧୯୮୭ ଡିସେମ୍ବରରେ ଯେଉଁ ଅଶୋଭନୀୟ 'ଘଟଣା ଘଟିଥିବାର ଅଭିଯୋଗ ହୋଇଛି ସେପରି ଅଶୋଭନୀୟ ଘଟଣା ଅବଶ୍ୟମ୍ଭାବୀ ।

ସେବାୟତସମାଜର କେତେକ ଉଚ୍ଚଶିକ୍ଷିତ ବ୍ୟକ୍ତି ଜଗନ୍ନାଥ ମନ୍ଦିରର ପରମ୍ପରାର ସୁରକ୍ଷା ପାଇଁ ପଣ୍ଡା—ସେବାୟତମାନଙ୍କର କର୍ତ୍ତବ୍ୟ ବିଷୟ ଉଲ୍ଲେଖ କରି ଜଣେ ଭକ୍ତର ଜାତିଗୋତ୍ର ପଚାରିବାର ଅଧିକାରର ଆଳରେ ଗତ ଡିସେମ୍ବରର ଘଟଣାକୁ ଏକ ମାମୁଲି ଘଟଣା ବୋଲି ବିଚାର କରି ବିବୃତିମାନ ଦେଇଛନ୍ତି । ସେମାନଙ୍କ ମଧ୍ୟରୁ କେହି କେହି ବିବୃତିରେ ଉଲ୍ଲେଖ କରିଛନ୍ତି ଯେ ମନ୍ଦିରର ପରମ୍ପରା ଅନୁଯାୟୀ ମନ୍ଦିର ମଧ୍ୟରେ କେବଳ ନୈଷ୍ଠିକ ହିନ୍ଦୁ ପ୍ରବେଶ କରିବାର ଅଧିକାର ଅଛି । ଏଇଠି ମନରେ କେତୋଟି ପ୍ରଶ୍ନ ଉଠୁଛି । ଏ ପରମ୍ପରା ସୃଷ୍ଟି କରିଛି କିଏ ଏବଂ କିଏ ତାକୁ ଲିପିବଦ୍ଧ କରି ରଖିଛି ? ଦ୍ୱିତୀୟତଃ ନୈଷ୍ଠିକ ହିନ୍ଦୁର ସଂଜ୍ଞା କଣ ? ବୈଦିକ ବିଶୁଦ୍ଧତାର ମାପକାଠିରେ ବର୍ତ୍ତମାନର ସେବାୟତଦଳ କଣ ନୈଷ୍ଠିକ ହିନ୍ଦୁ ? ଜଣେ ନୈଷ୍ଠିକ ହିନ୍ଦୁ କି ନୁହେଁ ଏହା ବିଚାର କରିବା ପାଇଁ ସେବାୟତ-ମାନଙ୍କୁ ଅଧିକାର ଦେଇଛି କିଏ ?

ଜାତି ଧର୍ମ ବର୍ଣ୍ଣ ନିର୍ବିଶେଷରେ ଆଗ୍ରହୀ ଦର୍ଶନାଭିଳାଷୀମାନେ ମନ୍ଦିରକୁ ପ୍ରବେଶ କରିବାର ଅଧିକାର ପାଇବା ହେଉଛି ସୁସ୍ଥ ପରମ୍ପରା ।

ପରମ୍ପରା ନାମରେ ସତୀଦାହ କରିବା କିମ୍ବା ବାଲ୍ୟବିବାହ କରିବା କିମ୍ବା ବହୁ ବିବାହ କରିବା ଯେପରି ଏକ ସାମାଜିକ କଳଙ୍କ ଏବଂ ଆଇନ ଦୃଷ୍ଟିରୁ ଦୋଷାବହ, ସେହିପରି କୌଣସି ଦର୍ଶନାଭିଳାଷୀ ବ୍ୟକ୍ତିଙ୍କୁ ମନ୍ଦିରଭିତରକୁ ( ଯଦି ଏହା ପ୍ରକୃତରେ ଭଗବାନଙ୍କ ପୂଜାସ୍ଥଳୀ ହୋଇଥାଏ ) ପ୍ରବେଶ କରିବାରେ ଅଧିକାରରୁ ବଞ୍ଚିତ କରିବା ଏକ କଳଙ୍କ ଏବଂ ଆଗ୍ରହୀ ବ୍ୟକ୍ତି-ବିଶେଷଙ୍କୁ ମନ୍ଦିର ଭିତରକୁ ପ୍ରବେଶ କରିବାରେ ବାଧା ସୃଷ୍ଟି କରୁଥିବାବ୍ୟକ୍ତି ଆଇନ ଚକ୍ଷୁରେ ଏକ ଅପରାଧୀ ବ୍ୟକ୍ତି ହେବା ଉଚିତ୍ ।

ଏତିକି ବ୍ୟାପକ ଭାବରେ ଦର୍ଶନାଭିଳାଷୀ ଭକ୍ତମାନଙ୍କ ବିଷୟ ବିଚାର ନ କରି କେବଳ ସେବାୟତମାନଙ୍କ ଉକ୍ତିକୁ ଉଦ୍ଧାର କରି 'ନୈଷ୍ଠିକ ହିନ୍ଦୁମାନଙ୍କର କେବଳ ମନ୍ଦିର ପ୍ରବେଶର ଅଧିକାର ଅଛି' ବକ୍ତବ୍ୟକୁ ବିଚାରକୁ ନେଲେ, ଏ ଦୁନିଆରେ କିଏ ବାହାସ୍ଫୋଟ ମାରି କହି ପାରିବ ଯେ ସେ ଜଣେ ନୈଷ୍ଠିକ ବ୍ୟକ୍ତି ? ଜାତିର ଜନକ ମହାତ୍ମାଗାନ୍ଧି ଯାହାଙ୍କୁ ଜଣେ ଆଦର୍ଶ ମାନବ ବା ନୈଷ୍ଠିକ ବ୍ୟକ୍ତି ବୋଲି କୁହା-ଯାଇପାରେ, ସେ ତ ଛୁଆଁ-ଅଛୁଆଁର ଅବିଚାର ମନ୍ଦିରର ଏକ ଅପୌକ୍ତିକ ପରମ୍ପରା ହୋଇଥିବାରୁ, ଅଭିମାନରେ ଶ୍ରୀମନ୍ଦିରରେ ପ୍ରବେଶ କରି ନ ଥିଲେ । ସେହି ମହାମାନବଙ୍କ ସେହି ଅଭିମାନ ଭରା ପଦକ୍ଷେପ ଆମକୁ କିଛି ଶିକ୍ଷା ଦେଇ ପାରିଲା ନାହିଁ । ଗୋଟିଏ ଅନ୍ଧ ପରମ୍ପରା ଉପରେ ପର୍ଯ୍ୟବସିତ ନୈଷ୍ଠିକତାର ସଙ୍ଜ୍ଞାକୁ ନେଇ ମନ୍ଦିର ପରିଚାଳନାରେ ବିଶେଷତଃ ଭକ୍ତମାନଙ୍କ ଦର୍ଶନ ବ୍ୟାପାରରେ ଯେଉଁ ଖାମ ଖିଆଲ ନୀତି ଚାଲିଛି, ତାହା ଗୋଟିଏ ସଭ୍ୟ ସମାଜ ପାଇଁ ଲଜ୍ଜାର ବିଷୟ ।

ଜଣେ ଦର୍ଶନାଭିଳାଷୀ ଭକ୍ତକୁ ଜାତି ଗୋତ୍ର ପଚାରିବାର ଅଧିକାର କାହାର ଅଛି ସେ ବିଷୟରେ ମଧ୍ୟ ବିଚାର କରିବା କଥା । ପ୍ରଚୁର ଭାବରେ ଦକ୍ଷିଣା ଦେଉଥିବା ପର୍ଯ୍ୟନ୍ତ ଜଣେ ଅବାଧରେ ଦର୍ଶନ କରୁଥିବା ଭକ୍ତକୁ ଦକ୍ଷିଣା ହ୍ରାସ ଯୋଗୁଁ ହଠାତ୍ ଜାଣି ଗୋତ୍ର ପଚାରିବାର କାରଣ କ'ଣ ? ବିଶେଷତଃ ଟିକେଟ୍ ସହାୟତାରେ ଜଗନ୍ନାଥଙ୍କ ସାନ୍ନିଧ୍ୟ ଲାଭ କରି ପାରିଥିବା ଜଣେ ଭକ୍ତକୁ ଜାତି-ଗୋତ୍ର ବାହାନାରେ ହଇରାଣ ହରକତ କାହିଁକି କରାଗଲା ତାହା ସହଜରେ ବୁଝିହେଉନି । ଡେଙ୍ଗେରାକୁ ଦେଖି

ଜାତିଗୋତ୍ର ଜାଣିବାରେ ସେବକଦଳ କପରି ସିଦ୍ଧହସ୍ତ ତାହା ମୋର ନିଜର ଅଭିଜ୍ଞତାରୁ ମୁଁ ବର୍ଣ୍ଣନା କରିପାରେଁ । ମୁଁ ଶତାଧିକବାର ଶ୍ରୀମନ୍ଦିର ଦର୍ଶନ କରିଥିଲେ ମଧ୍ୟ ମୋର ବେଶଭୂଷା ଦେଖି ମୋତେ ଜଣେ ଉତ୍ତର ଭାରତୀୟ ଯାତ୍ରୀ ମନେକରି ସେବକଗୋଷ୍ଠୀ ପ୍ରାୟ ସବୁ ଦର୍ଶନ ସମୟରେ ମୋ ସହିତ ହିନ୍ଦିରେ କଥାବାର୍ତ୍ତା କରିଥାନ୍ତି । ସେମାନେ ବୋଧହୁଏ ମନେ କରନ୍ତି ଯେ କୌଣସି ଓଡ଼ିଆ ହୃଷ୍ଟପୁଷ୍ଟ ଶ୍ରୀମାନ୍ ଏବଂ ସ୍ୱାସ୍ଥ୍ୟବାନ ନୁହନ୍ତି ।

ଯଦି ଜାତି, ଗୋତ୍ର ପଚାରିବାର ପ୍ରଥାକୁ କଡ଼ା କଡ଼ି ଭାବରେ ପ୍ରୟୋଗ କରାଯାଏ ( ଯାହାକି ଏକ ଅଯୌକ୍ତିକ କଥା ) ତାହାହେଲେ କୌଣସି ଏକ ନିର୍ଦ୍ଦିଷ୍ଟ ସ୍ଥାନରେ କୌଣସି ଦାୟିତ୍ୱବାନ୍ ବ୍ୟକ୍ତିଙ୍କ ଉପରେ ଏହି ଭାର ନ୍ୟସ୍ତ ହେଲେ ଅନ୍ତତଃ ଯାତ୍ରୀମାନେ ନିଜ ଉପରୁ ସନ୍ଦେହ ମୋଚନ କରିବା ମାନସରେ ପ୍ରତ୍ୟେକେ ସେହି ଅନାବଶ୍ୟକ ଡ଼ାମାର ମୁକାବିଲା କରି ନିଅନ୍ତେ । ନଚେତ୍ ବର୍ତ୍ତମାନର ପନ୍ଥା ଅନୁସରଣ କରି ଜାତିଗୋତ୍ର ପଚାରିବାର ଆଳରେ ଯାତ୍ରୀ ଉତ୍ପୀଡ଼ନର ଏକ ପରୋକ୍ଷ ସୁଯୋଗର ଅସଦ୍ ବ୍ୟବହାର ହେବା ଅବଶ୍ୟମ୍ଭାବୀ ।

## ● ସୁସ୍ଥ ଧର୍ମ ପରିଚାଳନା :

ଗୁଡ଼ାଏ ଅଯୌକ୍ତିକ ଜିନିଷକୁ ପରମ୍ପରା ଆଳରେ ତଥାକଥିତ ସେବକଗୋଷ୍ଠୀ ନିଜର ଜନ୍ମଗତ ଅଧିକାର ବୋଲି ଭାବିବା କେତେଦୂର ସମୀଚୀନ ତାହା ସମସ୍ତଙ୍କର ବିଚାର୍ଯ୍ୟ । ମନ୍ଦିରରେ ଭଗବାନଙ୍କ ସେବା କରିବା ହେଉଛି ଏକ ବୃତ୍ତି—ଜୀବିକା ନିର୍ବାହ ପାଇଁ ପୁରୁଷାନୁକ୍ରମେ କେତେକ ପରିବାର ସେବକର ସମ୍ମାନ ଏବଂ ଅଧିକାର ଦାବୀ କରି ଆସୁଛନ୍ତି । ଏହା କଣ ଯୁକ୍ତିସଙ୍ଗତ ? ଡାକ୍ତରର ପୁଅ ନିଶ୍ଚିତ ଭାବରେ ଡାକ୍ତର କି ଅଧ୍ୟାପକର ପୁଅ ନିଶ୍ଚିତ ଭାବରେ ଅଧ୍ୟାପକ ହୁଏ ନାହିଁ । ତେଣୁ କୌଣସି ବୃତ୍ତିଭିତ୍ତିକ କାର୍ଯ୍ୟ ପୁତ୍ର ପୌତ୍ରାଦି କ୍ରମେ କାହାରି କରିବାର ଅଧିକାର ନାହିଁ । ଯେଉଁ ମନ୍ଦିର ଦର୍ଶନ କରିବାର ବାସନା ଲକ୍ଷ ଲକ୍ଷ ଭକ୍ତଙ୍କର ଅଛି ସେମାନଙ୍କର ଭଲମନ୍ଦ ଅନୁଧ୍ୟାନ କରିବା ଭଳି ତାଲିମପ୍ରାପ୍ତ ପଣ୍ଡା ପଡ଼ିଆରିର ଆବଶ୍ୟକତା ସମସ୍ତେ ଉପଲବ୍ଧି

କରୁଅଛନ୍ତି । ସେହି ତାଲିମପ୍ରାପ୍ତ ସେବକମାନଙ୍କୁ ବାଛି ଏକ ନିର୍ଦ୍ଦିଷ୍ଟ ସଂଖ୍ୟକ ସେବକ ନିଯୁକ୍ତ କରିବା ମନ୍ଦିର ପରିଚାଳନା ଦାୟିତ୍ୱରେ ଥିବା କର୍ତ୍ତୃପକ୍ଷର ପ୍ରଥମ କର୍ତ୍ତବ୍ୟ । ବିଭିନ୍ନ ଦାୟିତ୍ୱରେ ଥିବା ସେବକମାନଙ୍କ କର୍ତ୍ତବ୍ୟ ଖସଡ଼ା ( Duty chart ) ଏବଂ ଅଧିକାର ସୀମା ମଧ୍ୟ ଲିପିବଦ୍ଧ ହେବା ଉଚିତ୍ । ଏହି ତାଲିମ ଏବଂ ବଛାବଛିରେ ଜାତି ବର୍ଣ୍ଣର ବାଛ ବିଚାର ନ କରିବା ବାଞ୍ଛନୀୟ । ଧର୍ମାନୁଷ୍ଠାନ ହେଉଛି ଶିକ୍ଷାନୁଷ୍ଠାନ ଭଳି ଏକ ସାର୍ବଜନୀନ ଅନୁଷ୍ଠାନ । ତେଣୁ ସେଠାରେ ସମସ୍ତଙ୍କର ପ୍ରବେଶ ଅଧିକାର ରହିବା ଉଚିତ୍ । ଶିକ୍ଷାନୁଷ୍ଠାନମାନଙ୍କରେ ଯେପରି ଶିକ୍ଷକ କିମ୍ବା କର୍ମଚାରୀ-ମାନଙ୍କ ବ୍ୟଭିଚାର ତଥା କପି ଭଳିଆ ଅସାମାଜିକ ଜିନିଷ ଅବୈଧ, ଧର୍ମାନୁଷ୍ଠାନ ମାନଙ୍କରେ ମଧ୍ୟ ଆଚରଣ ବିଧି ( Code of Conduct ) ଲିପିବଦ୍ଧ ହେବା ଉଚିତ୍ । ନଚେତ୍ ସବର୍ଣ୍ଣ ଅର୍ଥାତ୍ ତଥାକଥିତ ଉଚ୍ଚବଂଶଜ ହିନ୍ଦୁମାନଙ୍କ ସାମାଜିକ ଦୌରାତ୍ମ୍ୟର ଶିକାର ହୋଇ ଅନ୍ୟାନ୍ୟ ବ୍ୟକ୍ତି ଅର୍ଥାତ୍ ଅସବର୍ଣ୍ଣମାନେ ପୂଜାରାଧନାରେ ଭାଗୀଦାର ହେବାର ସୁଯୋଗ ନ ପାଇ ମୀନାକ୍ଷୀପୁରମ୍‌ର ହରିଜନମାନଙ୍କ ପରି ହିନ୍ଦୁଧର୍ମ ତ୍ୟାଗପୂର୍ବକ ଅନ୍ୟ ଧର୍ମ ଗ୍ରହଣ କରିବେ ଏବଂ ହିନ୍ଦୁ ଧର୍ମ ସଙ୍କୁଚିତ ହୋଇ ଅଚିରେ ବିଲୋପ ପାଇବ ଏଥିରେ ସନ୍ଦେହର ଅବକାଶ ନାହିଁ । ଏହା କହିବା ବାହୁଲ୍ୟ ଯେ ଆମର ଧର୍ମପରିଚାଳନାରେ ତଥା ସାମାଜିକ ଚଳଣିରେ ଅନୁଦାର ମତ ଯୋଗୁଁ ଧର୍ମାନ୍ତରୀକରଣର ଦ୍ୱାର ଉନ୍ମୁକ୍ତ ହୋଇ ଯାଉଛି । ଏ ସମ୍ପର୍କରେ ମୋର ରେଭେନ୍‌ସା କଲେଜରେ ୧୯୫୩ରେ ସ୍ନାତକୋତ୍ତର ଶ୍ରେଣୀରେ ପଢ଼ିବା ସମୟର ଏକ ଘଟଣା ମନେ ପଡ଼ୁଛି । ମୋର ଜଣେ ଆଦିବାସୀ ଖ୍ରୀଷ୍ଟିଆନ୍ ବନ୍ଧୁ ମଧ୍ୟ ସ୍ନାତକୋତ୍ତର ଶ୍ରେଣୀରେ ପଢ଼ୁଥିଲେ । ସେ ତାଙ୍କର ସ୍କୁଲ ଛାତ୍ରାବସ୍ଥାରେ ଦଶମ ଶ୍ରେଣୀରେ ପଢ଼ୁଥିବା ସମୟରେ ମିସନାରୀମାନଙ୍କ ପ୍ରଭାବରେ ଖ୍ରୀଷ୍ଟିଆନ ହୋଇଥିଲେ ଏବଂ ତା'ର ଚାରିବର୍ଷ ପରେ କଲେଜ ଛାତ୍ରାବସ୍ଥାରେ ନିଜ ବାପାମାଙ୍କୁ ଖ୍ରୀଷ୍ଟ ଧର୍ମରେ ଦୀକ୍ଷିତ କରାଇଥିଲେ । ବନ୍ଧୁଜଣକ ସ୍ନେହରେ ମୋତେ ପ୍ରଭୁ ଯୀଶୁଖ୍ରୀଷ୍ଟଙ୍କ ଏବଂ ମାତା ମେରୀଙ୍କ ଦୁଇଟି ସୁନ୍ଦର ରଙ୍ଗୀନ ଫଟୋ ଉପହାର ଦେଇଥିଲେ ଫଟୋଗୁଡ଼ିକ ବହୁତ ସୁନ୍ଦର ହୋଇଥିବାରୁ ମୋର ଭଗବତ୍ ଗୀତା ପୁସ୍ତକ ଭିତରେ ମୁଁ ତାହା ଯତ୍ନରେ ସାଇତି ରଖିଥିଲି । ଦିନେ ସେ ଆମ ବସାକୁ

ଆସିଥିଲେ ଏବଂ ତାଙ୍କ ଦେଇଥିବା ଫଟ ଦୁଇଟି ଗୀତା ମଝିରେ ରଖିଥିବା ଦେଖି ଆଶ୍ଚର୍ଯ୍ୟ ହୋଇ ପଚାରିଥିଲେ, "କେନ୍ତା ମହାରାଜ୍, ବାଁମନ୍ ହୋଇକରି ଯୀଶୁ ମହାପୁରୁର୍ ଫଟୁ ତୁମର୍ ଗୀତା ଭିତରେ ରଖିଛ ? ତୁମର୍ ଗୀତା ଅପବିତ୍ର ନାଇଁ ହୋଇ ଯାଏ ?"

"ଏ ବୁଆ, ଏନ୍ତା କେନ୍ତା କହୁଛ ?" ମୁଁ କହିଲି, "ତୁମେ କେତେ ଶର୍ଧା ନ ଏ ଫଟୁ ଦୁଇଟା ମୋତେ ଦେଇଛ । ମୋତେ ବି ଫଟୁ ଦୁଇଟା ସୁନ୍ଦର୍ ଲାଗୁଛେ । ହେଥିର୍ ଲାଗି ଗୀତା ଭିତରେ ରଖିଛେଁ ।"

ଦେଖିଲି ମୋର ବନ୍ଧୁଙ୍କର ଆଖି ଦିଓଟି ଆନନ୍ଦରେ ଛଳ ଛଳ ହୋଇଗଲା । ସେ ଭାବ ବିହ୍ୱଳ ହୋଇ କହିଲେ, "ମୋର ସାନ୍ ବେଲେ ତୁମର୍ ବାଗିର୍ ଅଏନ୍ ବାଁମନ୍ ଭେଟିଥିଲେ ମୁଇଁ ଖ୍ରୀଷ୍ଟିଆନ୍ ନାଇଁ ହୋଇଥିତି ।"

ବନ୍ଧୁଙ୍କର ଏହି ଉକ୍ତି ମୋର ମନରେ ଏକ ଗଭୀର ରେଖାପାତ କରିଥିଲା । ଆମର ଅନୁଦାର ମତି ଯୋଗୁଁ ଶହ ଶହ ଆଦିବାସୀ ହରିଜନ ଯେ ଧର୍ମାନ୍ତକରଣର ଶିକାର ହେଉଛନ୍ତି ସେ ବିଷୟ ଭାବି ମୁଁ ନିଜେ ଲଜ୍ଜିତ ମନେ କଲି । ତେଣୁ ଆମର ଧର୍ମର ଦ୍ୱାର ସମସ୍ତଙ୍କ ପାଇଁ ଉନ୍ମୁକ୍ତ ରଖି ଆଜି ଆମର ସଙ୍କୁଚିତ ଧର୍ମକୁ ପ୍ରସାରଣର ପଥକୁ ଆଣିବାକୁ ହେବ— ବିଭିନ୍ନ ମତ ଓ ଧର୍ମର ବ୍ୟକ୍ତି ବିଶେଷଙ୍କୁ ଆମର ଧାର୍ମିକ ଅନୁଷ୍ଠାନ-ମାନଙ୍କରେ ସାମିଲ୍ କରାଇ ଆମ ଧର୍ମର ଓ୍ୱାନ୍ ଓ୍ୱେ ଟ୍ରାଫିକ୍ ନୀତିକୁ ବନ୍ଦ କରିବାକୁ ହେବ ।

ଆମମାନଙ୍କୁ ବିନା ଦ୍ୱିଧାରେ ସେମାନେ ଗୀର୍ଜା କିମ୍ବା ମସ୍‌ଜିଦ୍‌କୁ ପ୍ରବେଶ କରିବାର ଅନୁମତି ଦେଉଛନ୍ତି । ମୁଁ ମଧ୍ୟ ଅତୀତରେ ଏକାଧିକ-ବାର ବିଭିନ୍ନ ଧର୍ମ ମନ୍ଦିରରେ ପ୍ରବେଶ କରିଛି । କେବଳ ପ୍ରବେଶ କରି ନାହିଁ, ମୋର ବନ୍ଧୁମାନେ ସେମାନଙ୍କ ଉପାସନା କରୁଥିବା ସମୟରେ ତାଙ୍କ ପାଖରେ ମୁଁ ମନେ ମନେ ଗାୟତ୍ରୀ ମହାମନ୍ତ୍ର ପାଠ କରିଛି ଏବଂ ପରମ ତୃପ୍ତି ଲାଭ କରିଛି । ଷୋଡ଼ଶ ଶତାବ୍ଦୀର ଶେଷ ଭାଗରେ ଗେଲିଲିଓ ଗୋଟିଏ ଗୀର୍ଜା ଭିତରେ ତାଙ୍କ ଧ୍ୟାନରତ ଭକ୍ତବନ୍ଧୁମାନଙ୍କ ଗହଣରେ

ଛାତରୁ ଝୁଲୁଥିବା ଲେମ୍ପର ଦୋଳାୟମାନ ଗତି ଲକ୍ଷ୍ୟ କରି ହିଁ ସେ ତ ଦୋଳକ ନିୟମର ଆବିଷ୍କାର କରିଥିଲେ ! ତାଙ୍କ ପାଇଁ ବୈଜ୍ଞାନିକ ସତ୍ୟର ସନ୍ଧାନ ଥିଲି ଧର୍ମର ସ୍ୱରୂପ । ତେଣୁ ନିଜର ଅଭିଷ୍ଟ ସିଦ୍ଧି ପାଇଁ ଯେକୌଣସି ସ୍ଥାନକୁ ପବିତ୍ର ବୋଲି ଗ୍ରହଣ କରାଯାଇ ପାରେ । ଗୀର୍ଜା କିମ୍ବା ମସ୍‌ଜିଦ୍‌ରେ ଆମେ ଯେ ଆମ ଆରାଧ୍ୟ ଦେବତାଙ୍କୁ ପାଇବୁ ନାହିଁ ଏହା ମୁଁ ଗ୍ରହଣ କରିବାକୁ ପ୍ରସ୍ତୁତ ନୁହେଁ ।

ଆମର ଧର୍ମାନୁଷ୍ଠାନମାନଙ୍କରେ ସୁଷ୍ଠୁ ପରିଚାଳନା କାର୍ଯ୍ୟକାରୀ କଲେ ଅବଶ୍ୟ ବର୍ତ୍ତମାନର ସେବକ ଗୋଷ୍ଠୀର ଅର୍ଥନୈତିକ ମେରୁଦଣ୍ଡ ଭାଙ୍ଗି-ଯିବାର ସମ୍ଭାବନା ଅଛି । ମାନବିକତା ଦୃଷ୍ଟିକୋଣରୁ ସେବାୟତମାନଙ୍କ ଅର୍ଥନୈତିକ ବିପର୍ଯ୍ୟୟ ପ୍ରତି ଦୃଷ୍ଟି ଦେଇ ହଠାତ୍ ବେରୋଜଗାରିଆ ହୋଇଯାଉଥିବା ସେବାୟତମାନଙ୍କ ସାମାଜିକ ଏବଂ ଅର୍ଥନୈତିକ ଥଇଥାନ ପ୍ରତି ମଧ୍ୟ ଏହି ପରିପ୍ରେକ୍ଷୀରେ ସଂପୃକ୍ତଙ୍କ ଦୃଷ୍ଟି ଆକର୍ଷଣ କରିବା ଦରକାର ।

## ● ଯୁବ ସମାଜକୁ ଆହ୍ୱାନ :

ଯୁଗେ ଯୁଗେ ଯୁବ ସମାଜ ଅସାଧ୍ୟ ସାଧନ କରି ଆସିଛି । ସାମାଜିକ ଅନ୍ୟାୟ ଏବଂ ଦୁର୍ନୀତି ବିରୁଦ୍ଧରେ ଅବିରାମ ସଂଗ୍ରାମ କରି ପୃଥିବୀରେ ବିଭିନ୍ନ ସ୍ଥାନରେ ଯୁବଶକ୍ତି ଏକ ସୁସ୍ଥ ଏବଂ ଦୁର୍ନୀତି ବିମୁକ୍ତ ସମାଜ ଗଠନରେ ନେତୃତ୍ୱ ନେଇ ଆସିଛି । ଗୋଟିଏ ପ୍ରାଚୀନତମ ଧର୍ମ, ଜାତି ଓ ସଂସ୍କୃତିକୁ ବଞ୍ଚାଇବା ପାଇଁ ସେମାନେ ଆଗଭର ହେବା ଉଚିତ ।

ବଂଶାନୁକ୍ରମରେ ମନ୍ଦିର ସେବାର ଅଧିକାର ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି ଜାତି ଧର୍ମ ବର୍ଣ୍ଣ ନିର୍ବିଶେଷରେ ଧର୍ମାଳୟମାନଙ୍କରେ ସେବକଗୋଷ୍ଠୀର ନିଯୁକ୍ତି ଉପରେ ସମସ୍ତେ ଗୁରୁତ୍ୱ ଦେବା ଏକାନ୍ତ ପ୍ରୟୋଜନ । ନଚେତ୍ ସମାଜରେ ଓକିଲାତି, ଅଧ୍ୟାପନା, ଡାକ୍ତରୀ ପ୍ରଭୃତି ବିଭିନ୍ନ ବୃତ୍ତିରେ ଲିପ୍ତ ଥିବା ବ୍ୟକ୍ତିମାନେ ସେବକ ପରିବାରର ସଦସ୍ୟ ହୋଇ ନିଜର ଶିକ୍ଷାଗତ ଯୋଗ୍ୟତା ଜନିତ ବୃତ୍ତି ସହିତ ଅଯଥାରେ ଆଉ ଏକ ଜନ୍ମଗତ ବୃତ୍ତିରୁ ଅର୍ଥ ଉପାର୍ଜନର ସୁଯୋଗ ପାଇବେ ଏବଂ,

ତାଙ୍କ ଦ୍ୱାରା ନିଯୁକ୍ତ ହଲେ ଅଯୋଗ୍ୟ ଲୁଣ୍ଠିଆ ତଥା କଥିତ ସେବକଙ୍କ ହାତରେ ମନ୍ଦିରର ଭଲ ମନ୍ଦ ନ୍ୟସ୍ତ ରହିବ ।

ଆଜ ହିନ୍ଦୁ ଧର୍ମ ସୁରକ୍ଷା ନାମରେ ଯେଉଁ ଅବସ୍ଥାର ସୃଷ୍ଟି ସେଥିପ୍ରତି ସମସ୍ତେ ସଜାଗ ରହିବା ଉଚିତ । ଆଜ ଆମର ଧର୍ମର ବଡ଼ ପଣ୍ଡା ବୋଲାଉଥିବା ତଥାକଥିତ ଆଚାର୍ଯ୍ୟମାନେ ପୁଣି ଥରେ ସତୀ ପ୍ରଥା ତଥା ଛୁଆଁ ଅଛୁଆଁ ପ୍ରଥାର ସପକ୍ଷରେ ନିର୍ଲଜ ବକ୍ତବ୍ୟମାନ ଦେଇ ଆମ ସଂସ୍କୃତିକୁ କଦର୍ଥ କରିବାର ଅପଚେଷ୍ଟା କରୁଛନ୍ତି । ବର୍ତ୍ତମାନ ତାର କଡ଼ା ମୁକାବିଲାର ସମୟ ଆସିଲାଣି । ଜଗନ୍ନାଥଙ୍କୁ ଦର୍ଶନ କରିବା ପାଇଁ ଲକ୍ଷ ଲକ୍ଷ ଲୋକଙ୍କର ଅଦମ୍ୟ ପିପାସାର ସୁଯୋଗ ନେଇ ଆଜ ଯେଉଁ ମୁଷ୍ଟିମେୟ ଭଣ୍ଡ ସେବକ ବ୍ୟଭିଚାରର ଜାଲ ବିଛେଇ ଦେଇଛନ୍ତି ତାକୁ ଛିଣ୍ଡେଇବାକୁ ହେବ ।

ଜାତି ଧର୍ମ ବର୍ଣ୍ଣ ନିର୍ବିଶେଷରେ ଜଗନ୍ନାଥ ଦର୍ଶନ କରିବାର ବାସନା ଯେ ଅଗଣିତ ଭକ୍ତଙ୍କର ଅଛି ଏଥିରେ ତିଳେ ମାତ୍ର ସନ୍ଦେହର ଅବକାଶ ନାହିଁ । ୧୯୭୧ ମସିହାର ରଥଯାତ୍ରା ସମୟର କଥା । ମୋର ପୁରୀ ରହଣି ବର୍ଷାଧିକ କାଳ ହୋଇଥିଲେ ମଧ୍ୟ ମୁଁ ଥରେ ହେଲେ ଜଗନ୍ନାଥ ମନ୍ଦିର ଦର୍ଶନ କରି ନ ଥାଏଁ—ସମ୍ଭବତଃ ମୋର ଯୁବକ ସୁଲଭ ଈଶ୍ୱର ବିରୋଧୀ ମନୋଭାବ ତଥା ପଣ୍ଡା ପଡ଼ିଆରୀଙ୍କ ଦୌରାତ୍ମ୍ୟ ଯୋଗୁଁ । ବାହୁଡ଼ା ଯାତ୍ରା ପରେ ପ୍ରଭୁ ଜଗନ୍ନାଥ ରଥ ଉପରେ ସିଂହ ଦ୍ୱାରରେ ବିରାଜମାନ କରିଥାନ୍ତି । ସେ ସମୟରେ ପୁରୀ ସାମନ୍ତ ଚନ୍ଦ୍ରଶେଖର କଲେଜର ତତ୍କାଳୀନ ଅଧ୍ୟକ୍ଷଙ୍କ ସହିତ ସାନ୍ଧ୍ୟ ଭ୍ରମଣରେ ବାହାରିଥାଏ । ଅଧ୍ୟକ୍ଷ ମହାଶୟ ସିଂହଦ୍ୱାରକୁ ଯାଇ ଜଗନ୍ନାଥ ଦର୍ଶନ କରିବାର ଇଚ୍ଛା ପ୍ରକଟ କଲେ । ମୋର ମନା କରି ଦେବାକୁ ଇଚ୍ଛା ହେଉଥାଏ କିନ୍ତୁ ଅଧ୍ୟକ୍ଷ ମହାଶୟ ମୋର ପୂର୍ବତନ ଶିକ୍ଷକ ହୋଇଥିବାରୁ ମୁଁ ତାଙ୍କ ସହିତ ସିଂହଦ୍ୱାରକୁ ଗଲି ଶାଳୀନତା ଦୃଷ୍ଟିରୁ । କିନ୍ତୁ ଯୋଡା ନ ଓହ୍ଲାଇ ଦୂରରେ ଠିଆ ହୋଇ ରହିଲି ।

ପୋଲିସ ବ୍ୟବସ୍ଥା ହୋଇଥାଏ । ଚାରିଆଡ଼େ ପୋଲିସ ଜଗୁଆଳି ଛିଡ଼ା ହେଇଥାନ୍ତି । ଦେଖିଲି ଶିଡ଼ି ଉପରେ ଅଗଣିତ ଭକ୍ତ ଜଗନ୍ନାଥଙ୍କୁ

ସ୍ପର୍ଶ କରିବାକୁ ବ୍ୟଗ୍ରତା ପ୍ରକାଶ କରି ଛନ୍ତି । ସେବକଗଣ ଯାହା ପାଖରୁ ଉପଯୁକ୍ତ ଦକ୍ଷିଣା ପାଉଛନ୍ତି ସେମାନଙ୍କୁ ଜଗନ୍ନାଥଙ୍କୁ ସ୍ପର୍ଶ କରାଇ ଅନ୍ୟ-ମାନଙ୍କୁ ଠେଲି ପେଲି ବାହାର କରି ଦେଉଛନ୍ତି । ଯେଉଁମାନେ ଜଗନ୍ନାଥଙ୍କୁ ସ୍ପର୍ଶ କରୁଛନ୍ତି ସେମାନଙ୍କ ମନର ପ୍ରସନ୍ନତା ଏବଂ ଠେଲାପେଲର ପଛରେ ପଡ଼ିଥିବା ଭକ୍ତମାନଙ୍କ କାତରତା ଦେଖି ମୋତେ ଗୋଟିଏ ଡ୍ରାମା ଦେଖିଲି ଭଳି ଜଣା ପଡ଼ୁଥାଏ ।

"ତୁମେ ଜଡ଼ ବଙ୍ଗାଳୀମାନେ ଏମିତି ନାସ୍ତିକ ହେଲେ ଚଳିବ କମିତି ?" କହି ସେହି ଭିଡ଼ ଭିତରକୁ ଅଧ୍ୟକ୍ଷ ମହାଶୟ ମଧ୍ୟ ପଶିଗଲେ ।

ମୋତେ ଦୂରରେ ଛିଡ଼ା ହେବାର ଦେଖି ସେହି ପୋଲିସ ବାହିନୀର ମୁଖ୍ୟ ଜଣେ ସାର୍ଜେଣ୍ଟ ମେଜର୍ ମୋତେ ନମସ୍କାର କରି ପଚାରିଲେ, "ସାର୍, ଆପନ୍ ରଥ୍ ଉପର୍‌କେ ନାଇଁ ଚଢ଼ନ୍ ?"

ସମ୍ବଲପୁରୀ ଭାଷାରେ ଏ ପ୍ରଶ୍ନ ଶୁଣି ସେହି ପୋଲିସ୍ ପୋଷାକଧାରୀ ଯୁବକକୁ ନିରେଖି ଦେଖିଲି । ସେ ମୋର ଗଙ୍ଗାଧର ମେହେର କଲେଜର ଜଣେ ହକି ଖେଳୁଆଡ଼ ପ୍ରାକ୍ତନ ଆବାସୀ ଛାତ୍ର ବୋଲି ଚିହ୍ନି ପାରିଲି । ତାଙ୍କର ପ୍ରଶ୍ନର ଉତ୍ତର ନ ଦେଇ ତାଙ୍କ ଭଲ ମନ୍ଦ ବିଷୟରେ ଦୁଇଚାରି ପଦ କଥାବାର୍ତ୍ତା ହେଲି । ମୋର ପ୍ରାକ୍ତନ ଛାତ୍ର ପୁଣି ପ୍ରଶ୍ନ କଲେ, "ଆଜ୍ଞା, ରଥ୍ ଉପର୍‌କେ ଚଢ଼୍‌ବେ ? କିଛି ଅସୁବିଧା ନାଇଁ ହୁଏ । ମୁଇଁ ସବୁ ଇନ୍ତଜାମ୍ କରି ଦେମି ।"

"ନାଇଁ ଥାଉ ।" ମୁଁ ଉତ୍ତର ଦେଲି, "ଏନ୍ତୁ ଦେଖ୍‌ଲେ ଯେନ୍ତା ଉପର୍‌କେ ଯାଇ କରି ଦେଖ୍‌ଲେ ବି ହେନ୍ତା । ମହାପୁରୁ ତ ମହାପୁରୁ । ସବୁ ଯାଗାନ ମହାପୁରୁ ଅଛନ୍ ।"

"ଏନ୍ତା କେନ୍ତା କହୁଛନ୍ ଅଜ୍ଞା ?" ସେ ଅଭିମାନ ଭରା ଗଳାରେ କହିଲେ, "ମୁଇଁ ଖ୍ରୀଷ୍ଟିଆନ୍ ଲୋକ୍ ହେଲେ ବି ଜାଣା ହେଲି—ଜଗନ୍ନାଥ ହେଉଛନ୍ ସମସ୍ତଙ୍କର୍ ମହାପୁରୁ—ମହାପୁରୁମାନଙ୍କର ମହାପୁରୁ । ଆମେ ସିନା ସାନ୍ ଜାତିର୍ ଲୋକ ବୋଲି ଦୂର ଦର୍ଶନ କରୁଁ, ଆପନ୍ ତ ବାମନ୍ ଲୋକ । ମହାପୁରୁଙ୍କର୍ ପାଖ୍‌କେ ଯିବାର୍, ମହାପୁରୁଙ୍କୁ ଛୁଇଁବାର ଅଧିକାର ଆପନ୍‌ଙ୍କର୍ ଅଛେ ।"

ମୁଁ ଥରେ ମୋର ସେହି ପ୍ରାକ୍ତନ୍ ଗୁରୁ ଖ୍ରୀଷ୍ଟଧର୍ମାବଲମ୍ବୀ ଆଦିବାସୀଙ୍କ ମୁହଁକୁ ଅନାଇ ଦେଖିଲି, ସେ ନିର୍ବିକାର ଭାବରେ ବିନା ଦ୍ୱିଧାରେ ତାଙ୍କର ବକ୍ତବ୍ୟ କହି ଯାଉଛନ୍ତି ।

ମୁଁ କହିଲି, "ହେଲେ ଥିର୍ ଲାଗି ତ ମୁଇଁ ଦର୍ଶନ୍ ନାଇଁ କର୍‌ବାର୍ । ମହାପ୍ରଭୁଙ୍କୁ ସେ ଭଲ୍ ପାଏସି ତାହାକେ ଯଦି ମହାପ୍ରଭୁ ଛୁଆଁ ନାଇ ହିଅନ୍, ସେ ମହାପ୍ରଭୁ କାଏଁ ମହାପ୍ରଭୁ ଆନ୍ ?"

"ଏନ୍ତା ନାଇଁ କହୁନ୍ ଆଜ୍ଞା । ମୁଇଁ ତ ଜାନି କରି ରଥଯାତ୍ରା ଡ୍ୟୁଟି ପକାସିଁ । ମହାପ୍ରସାଦ୍ ମୋକେ ବହୁତ୍ ଭଲ୍ ଲାଗ୍‌ସି । ଏଠାନୁ ମୁଇଁ ମହାପ୍ରଭୁଙ୍କୁ ସବୁବେଳେ ଦେଖୁଥିସିଁ—ଦୁସ୍‌ରା ଆଡ଼େ ଡ୍ୟୁଟି ନାଇଁ କରେଁ । ଆପନ୍ ଯଦି ନିଜର୍ ଲାଗି ରଥ ଉପର୍‌କେ ଯିବାକେ ନାଇଁ ଚାହେଁବାର, ମୋର ଲାଗି ହେଲେ ଥରେ ମହାପ୍ରଭୁକେ ଛୁଇଁ ଆସୁନ୍ ।"

ତାଙ୍କ କଣ୍ଠରେ ଆନ୍ତରିକତା ଥିଲା । ତାଙ୍କର ସେହି କଥା ଶୁଣି ମୋର ଦେହରେ ସତେ ଯେମିତି ଏକ ବିଦ୍ୟୁତ୍ ସ୍ରୋତ ପ୍ରବାହିତ ହେଲା । ଦେଖିଲି, ସେ ଏକାଗ୍ର ଚିତ୍ତରେ ଅନାଇଛନ୍ତି ରଥାରୂଢ଼ ପ୍ରଭୁ ଜଗନ୍ନାଥଙ୍କୁ । ଗୋଟିଏ ଅନ୍ଧ ପରମ୍ପରାର ବଶବର୍ତ୍ତୀ ହୋଇ ତାଙ୍କ ଭଳିଆ ଭକ୍ତ ଯେ ପ୍ରଭୁଙ୍କୁ ଛୁଇଁବାର ସୁଯୋଗରୁ ବଞ୍ଚିତ ହେଉଛନ୍ତି ଏହା ଭାବି ମନେ ମନେ ଲଜ୍ଜିତ ହେଲି । ତାଙ୍କର ଜଗନ୍ନାଥ ମମତା ଦେଖି ମୋର ଅବିଶ୍ୱାସ-ବରଫ ସତେ ଯେମିତି ତରଳିବାକୁ ଲାଗିଲା । ମନେ ହେଲା, ସତେ ଯେମିତି ସେ ମୋତେ ଏକ ନୂତନ ଦୀକ୍ଷାରେ ଦୀକ୍ଷିତ କରାଇଛନ୍ତି । "ମୋ ପାଇଁ ଅନ୍ତତଃ ଜଗନ୍ନାଥଙ୍କୁ ସ୍ପର୍ଶ କରି ଆସନ୍ତୁ ।"—କି ଚମତ୍କାର ଚିନ୍ତାଧାରା—କି ମହାନ୍ ହୃଦୟ ! ଜୋତା ଖୋଲି ମୁଁ ଆଖି ପିଛୁଳାକେ ରଥ ଉପରକୁ ଚଢ଼ିଗଲି ।

ତା'ପରେ ମୋର କିଛି ମନେ ନାହିଁ । ସେ ଭିଡ଼ କେମିତି ମୁଁ ପାର ହେଲି ମୁଁ ଜାଣେ ନାହିଁ । କୌଣସି ପଣ୍ଡା ପଡ଼ିଆସି ମୋତେ ବାରଣ କଲେ କି ନାହିଁ ମୋର ମନେ ପଡ଼ୁନାହିଁ । ଖଣ୍ଡେ ଲୁହା ପିଣ୍ଡୁଳାକୁ

ମେଗ୍ନେଟ୍ ଟାଣି ନେଲା ଭଳି ପ୍ରଭୁ ଜଗନ୍ନାଥ ସତେ ଯେମିତି ମୋତେ ଟାଣି ନେଲେ ।

ମୋର ଜ୍ଞାନୋଦୟ ହେବା ସମୟରେ ମୁଁ ଅନୁଭବ କଲି ମୁଁ ଜଗନ୍ନାଥଙ୍କୁ ଗାଢ଼ ଆଲିଙ୍ଗନ ପାଶରେ ବଦ୍ଧ କରିଛି । ସେଇଠୁ ତନ୍ମୟ ହୋଇ ମୁଁ ଅବତରଣ କଲି । ମୋର ପ୍ରାକ୍ତନ ଗୁରୁଙ୍କୁ ଆଲିଙ୍ଗନ ପାଶରେ ବଦ୍ଧ କରି ଜଗନ୍ନାଥଙ୍କ ସ୍ପର୍ଶର ଶିହରଣରେ ତାଙ୍କୁ ସତେ ଯେମିତି ଭାଗୀଦାର କଲି । ମୁଁ ଅନୁଭବ କଲି, ତାଙ୍କ ଶରୀରରେ ଗୋଟିଏ ଶିହରଣ ଖେଳିଗଲା । ମୋର ମନେ ଅଛି ପ୍ରଭୁ ଜଗନ୍ନାଥଙ୍କ ସ୍ପର୍ଶ ପରେ ଅଗୁରୁ ଚନ୍ଦନ କର୍ପୂରର ଯେଉଁ ଅପୂର୍ବ ସୁଗନ୍ଧ ମୋର ଶରୀର ମଧ୍ୟରେ ପ୍ରବେଶ କରିଥିଲା ତାହା ପ୍ରାୟ ଦଶଦିନ ପର୍ଯ୍ୟନ୍ତ ମହକ ଉଠୁଥିଲା । ଆଜି ମଧ୍ୟ ସେଦିନର ଦୃଶ୍ୟ ବିଷୟ ଚିନ୍ତା କଲେ ମୋର ଦେହରେ ଶିହରଣ ସୃଷ୍ଟି ହୁଏ ଏବଂ ଖ୍ରୀଷ୍ଟିଆନ୍ ଯୁବ ବନ୍ଧୁର ଜଗନ୍ନାଥ ଦର୍ଶନା-ଭିଳାଷର ସାନ୍ଦ୍ରତା ଏବେ ମଧ୍ୟ ମୋ ମନରେ ଆଲୋଡ଼ନର ସୃଷ୍ଟି କରେ ।

ତେଣୁ ସେବକମାନଙ୍କ ଦୌରାତ୍ମ୍ୟ ଭୟରେ ବା ଅଭିମାନରେ ଭଗବାନଙ୍କ ଠାରୁ ଦୂରେଇ ନ ରହି ସେହି ଦୌରାତ୍ମ୍ୟ ବିରୁଦ୍ଧରେ ଅଭିଯାନ କରି ଏକ ଭେଦଭାବଶୂନ୍ୟ ପରମ୍ପରା ସୃଷ୍ଟି କରିବା ସମସ୍ତଙ୍କ ପବିତ୍ର କର୍ତ୍ତବ୍ୟ । ଯୁବ ସମାଜ ଏହାର ନେତୃତ୍ୱ ନେଇ ଦେଶ ଓ ଧର୍ମକୁ ବଞ୍ଚାଇବା ନିତାନ୍ତ ଆବଶ୍ୟକ ।



ମନ୍ଦିର୍ ମେ ରାମ ମସଜିଦ୍ ମେ ଆଲ୍ଲା
ଗୁରୁଦ୍ୱାର ମେ ତୁ ଗୁରୁ ନାନକ ହୈ,
ଭକ୍ତ-ହୃଦୟ ମେ ତୁ ଜଗନ୍ନାଥ
ତୁ ସଚ୍ଚା ପତିତ ପାବନ ହୈ ।

ପଣ୍ଡିତ ରମାନାଥ ତ୍ରିପାଠୀ ଜଣେ ସୁପ୍ରତିଷ୍ଠିତ ବ୍ୟକ୍ତି । ପୁରୀ ମୁକ୍ତିମଣ୍ଡପର ସଭାପତି ସେ । ଶ୍ରୀମନ୍ଦିର ପରିଚାଳନାରେ ତାଙ୍କର ବକ୍ତବ୍ୟ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ସେ ତାଙ୍କର ପୁଅ ପ୍ରଭୁଦତ୍ତଙ୍କୁ ଶାସ୍ତ୍ର ଶିକ୍ଷାରେ ଧୁରନ୍ଧର କରିବା ପାଇଁ; ବେଦ ଉପନିଷଦର ଶିକ୍ଷା ଦେବା ସଙ୍ଗେ ସଙ୍ଗେ ଉଚ୍ଚାଙ୍ଗ ଦର୍ଶନ ଅଧ୍ୟୟନ କରିବା ପାଇଁ, ବନାରସ ବିଶ୍ୱବିଦ୍ୟାଳୟକୁ ପ୍ରେରଣ କରନ୍ତି । ପିତା ଅତ୍ୟନ୍ତ ରକ୍ଷଣଶୀଳ ହେଲେ ମଧ୍ୟ ପୁଅ ଅତ୍ୟନ୍ତ ଉଦାର । ମାତା ମାୟାଦେବୀ ଜଣେ ସ୍ନେହମୟୀ ନାରୀ । ବେଦ ଉପନିଷଦର ନିର୍ଯ୍ୟାସ ଲଭିକରି ପ୍ରଭୁଦତ୍ତ ଦୃଢ଼ମତ ଯେ, ବର୍ତ୍ତମାନର କୁସଂସ୍କାର ଗ୍ରସ୍ତ ହିନ୍ଦୁ ସମାଜକୁ ପରିବର୍ତ୍ତନ କରିବାକୁ ହେବ । ଜାତି ଓ ଧର୍ମର ଆଳରେ ସଂସ୍କୃତିର ଯେପରି କ୍ଷିପ୍ର ଅଧୋଗତି ହେଉଛି, ସେ ବିଗରେ ସମସ୍ତଙ୍କୁ ଅବଗତ କରାଇବା ସଙ୍ଗେ ସଙ୍ଗେ ସନାତନ ଧର୍ମକୁ ସମସ୍ତଙ୍କର ଆସ୍ଥାଭାଜନ କରିବା ପାଇଁ ଏବଂ ତାକୁ ବେଦଭିତ୍ତିକ କରିବା ପାଇଁ ସେ ଚେଷ୍ଟିତ ହୁଏ । ତାର ଦୃଢ଼ ଧାରଣା ଯେ, ଜଗନ୍ନାଥ ଏକ ପ୍ରତୀକ—ସେ ହେଉଛନ୍ତି ସମସ୍ତଙ୍କର ଦେବତା । ହିନ୍ଦୁମାନଙ୍କ ଦୌରାତ୍ମ୍ୟରୁ ଜଗତର ନାଥ ଯେ ସଙ୍କୁଚିତ ହୋଇଯାଇଛନ୍ତି ତାହା ତା ମନରେ ଗଭୀର ରେଖାପାତ କରିଛି, ଆଘାତ ଦେଇଛି ମଧ୍ୟ । ସମସ୍ତ ଆଗ୍ରହୀ ଭକ୍ତଙ୍କୁ ଯେ ଶ୍ରୀମନ୍ଦିର ଦର୍ଶନ

କରିବାର ସୁଯୋଗ ମିଳିବା କଥା—ଏଥିରେ ସେ ଦୃଢ଼ ମତ । ଏଇଠି ହୋଇଛି ତାର ମତଭେଦ ପିତାଙ୍କ ସହିତ । ଜାତି-ଧର୍ମ ନିର୍ବିଶେଷରେ ସମସ୍ତ ଭକ୍ତଙ୍କୁ ଜଗନ୍ନାଥ ମନ୍ଦିରରେ ପ୍ରବେଶ କରାଇ ପାରିଲେ ତାହା ଜଗନ୍ନାଥଙ୍କର ଉତ୍କର୍ଷତା ପ୍ରତିପାଦନ କରିପାରିବ ଏବଂ ଦରକାର ପଡ଼ିଲେ ଏଥିପାଇଁ ବିପ୍ଳବ ମଧ୍ୟ କରିବାକୁ ହେବ—ଯେ ହେଲ୍ ପୁଅର ଆଦର୍ଶ । ପ୍ରଭୁଦତ୍ତର ବନ୍ଧୁମାନେ ତା ସହିତ ମିଶି ସୃଷ୍ଟି କରିବାକୁ ଗୃହାନ୍ତ ଜନମତ । ରକ୍ଷଣଶୀଳ ସମାଜ ଏବଂ ଗୁଣ୍ଡା ଶ୍ରେଣୀର ଲୋକଙ୍କ ମଧ୍ୟରେ ହୁଏ ସମ୍ଝୌତା । ଆଉ ତା'ପରେ ଆରମ୍ଭ ହୁଏ ସଂଘାତ ।



[ ପୃଷ୍ଠଭୂମିରେ ଜଗନ୍ନାଥଙ୍କ ମୂର୍ତ୍ତି । ସେ ମୂର୍ତ୍ତିର ତେଜ ଯେମିତି ଉଭେଇ ଯାଇଛି । ତାଙ୍କ ଆଖିରୁ ବହୁଛି ଲୁହ ଓ ଲହୁର ଧାର । ଏହି ପ୍ରତିଫଳନ ନାଟକର ଶେଷ ଦୃଶ୍ୟ ପର୍ଯ୍ୟନ୍ତ ରହିବ । ଜଗନ୍ନାଥଙ୍କ ମୂର୍ତ୍ତି ଉଦ୍‌ଭାସିତ ହେଉଁ ହେଉଁ 'ଜଗନ୍ନାଥ ସ୍ୱାମୀ ନୟନପଥ ଗାମୀ ଭବତୁମେ' ଗୀତରେ ଚତୁଃପାର୍ଶ୍ୱ ଗୁଞ୍ଜରି ଉଠେ । ତାପରେ ଗୀର୍ଜା ଘଣ୍ଟି ଓ 'ଆଲ୍ଲା ହୋ ଆକବର' ଧ୍ୱନି ଶୁଣାଯାଏ । ଗୋଟିଏ କରୁଣ ରାଗିଣୀରେ ଚତୁଃପାର୍ଶ୍ୱ ଗୁଞ୍ଜରି ଉଠେ । ସେତେବେଳେ ଶୁଣାଯାଏ : 'ଆମକୁ କ୍ଷମାକର ପ୍ରଭୁ ଜଗନ୍ନାଥ ! ତୁମର ରକ୍ଷଣଶୀଳ ସେବକମାନେ ତୁମକୁ ଯେଉଁ ପିଞ୍ଜରାରେ ବାନ୍ଧି ରଖିଛନ୍ତି—ତୁମେ ସେହି ବିଷାଦରେ ଲହୁ ଓ ଲୁହ ଢାଳି ବିମର୍ଷ ହୋଇପଡ଼ିଛ । ଆମକୁ ଶକ୍ତି ଦିଅ ପ୍ରଭୋ ? ସେ ପିଞ୍ଜରା ଭାଙ୍ଗିବାକୁ ଆମକୁ ସାହସ ଦିଅ ।'

ମଞ୍ଚ ସମ୍ପୂର୍ଣ୍ଣ ଭାବରେ ଆଲୋକିତ ହେଲା ବେଳକୁ ସିଂହଦ୍ୱାରରେ ଦିଶୁଛି ଅରୁଣ ସ୍ତମ୍ଭ । ଦଳେ ଗୈରିକ ବସନଧାରୀ ବିଦେଶୀ ଭକ୍ତ 'ହରେ କୃଷ୍ଣ ହରେ କୃଷ୍ଣ, କୃଷ୍ଣ କୃଷ୍ଣ ହରେ ହରେ, ହରେ ରାମ ହରେ ରାମ, ରାମ ରାମ ହରେ ହରେ' କୀର୍ତ୍ତନ କରି କରି ସିଂହଦ୍ୱାରରେ ପହଞ୍ଚନ୍ତି । ସମସ୍ତେ ତନ୍ମୟ । ଶ୍ରୀମନ୍ଦିରର ଦ୍ୱାର କିନ୍ତୁ ସେମାନଙ୍କ ପାଇଁ ବନ୍ଦ । ଶ୍ରୀମନ୍ଦିରର ପଣ୍ଡା ସେମାନଙ୍କୁ

ବାରଣ କରେ । ସେମାନେ କୌଣସି ଅଭିଯୋଗ ନ କରି କୀର୍ତ୍ତନ କରି କରି ଫେରିଯାନ୍ତି । ଏହି ସମୟରେ ପ୍ରବେଶ କରେ ପ୍ରଭୁଦତ୍ତ । ]

ପଣ୍ଡା—ସାନବାବୁ, ତମେ କେବେ ଆସିଲ ବନାରସରୁ ? ଜଗନ୍ନାଥଙ୍କ ଆଳଟିର ବେଳ ହେଲାଣି । ଆସ ଜଗନ୍ନାଥ ଦର୍ଶନ କରିବ ।

ପ୍ରଭୁ—ଜଗନ୍ନାଥଙ୍କୁ ଦର୍ଶନ କରିବା ପାଇଁ ଅବଶ୍ୟ ଆସିଥିଲି କିନ୍ତୁ ଫେରି-ଯାଉଛି । ମୁଁ ତୁମ ଜଗନ୍ନାଥ ଦର୍ଶନ କରିବି ନାହିଁ ।

ପଣ୍ଡା—ତୁମେ ପଣ୍ଡିତ ରମାକାନ୍ତ ମିଶ୍ରଙ୍କ ପୁଅ ହୋଇ ଏମିତି କହୁଛ ? ନନା ତୁମର ମୁକ୍ତିମଣ୍ଡପର ସଭାପତି ! ତୁମେ ଜଗନ୍ନାଥ ଦର୍ଶନ ନ କରି ଫେରିଯିବ ?

ପ୍ରଭୁ—ତୁମେ ଯେତେବେଳେ କୀର୍ତ୍ତନରତ ଗୋରା ଭକ୍ତମାନଙ୍କୁ ଭଗବାନଙ୍କ ଦର୍ଶନ ନ କରାଇ ଫେରାଇ ଦେଇପାରୁଛ, ମୁଁ କାହିଁକି ଭଗବାନଙ୍କ ଦର୍ଶନ କରିବି ? ସେମାନଙ୍କ ଭଳି ମୋ ମନରେ ତ ଏତେ ଅନାବିଲ ଭକ୍ତି ନାହିଁ । ମୋତେ ମନ୍ଦିର ଭିତରକୁ ପଶିବାକୁ କେହି ବାରଣ କରିଥିଲେ ତ ମୁଁ କ୍ରୁଦ୍ଧ ହୋଇ ଯୁକ୍ତି କରିଥାନ୍ତି କିନ୍ତୁ ସେମାନେ ପ୍ରତିବାଦ ନ କରି ଆସୁଛନ୍ତି ଏବଂ ନିର୍ବିକାର ଭାବରେ ଫେରି-ଯାଉଛନ୍ତି । ସେମାନେ ପ୍ରକୃତ ଭକ୍ତ—ମୁଁ ନୁହେଁ ।

ପଣ୍ଡା—ଏ କି ରକମ କଥା କହୁଛ ପ୍ରଭୁଦତ୍ତବାବୁ ? ତୁମର ଜନ୍ମ ହୋଇଛି ବ୍ରାହ୍ମଣ କୁଳରେ । ସେମାନେ ହେଲେ ମ୍ଳେଚ୍ଛ । ଏ ଜନ୍ମରେ ସେମାନେ ମନ୍ଦିର ପ୍ରବେଶ କରି ପାରିବେନି ।

ପ୍ରଭୁ—ଏମିତି ଯୁକ୍ତିବାଡ଼ି ଆମେ ଯୁଗ ଯୁଗ ଧରି ଜଗନ୍ନାଥଙ୍କୁ ଅପମାନିତ କରି ଆସିଛୁ । ଆମର ସ୍ୱାର୍ଥସିଦ୍ଧି ପାଇଁ ଆମେ ଯେଉଁ ଆଇନ୍ ସବୁ ମନେ ମନେ ଗଢ଼ିଛୁ ତାହା କେବଳ ଆମ ଧର୍ମକୁ ହୀନବଳ କରୁ-ନାହିଁ, ତା ଜରିଆରେ ଆମର ଆରାଧ୍ୟ ଦେବତା ପ୍ରଭୁ ଜଗନ୍ନାଥଙ୍କୁ ଆମେ ଅବରୁଦ୍ଧ କରି ଶ୍ୱାସରୁଦ୍ଧ କରି ଦେଇଛୁ । ଆଜି ସେହି ଚକାଡୋଳାଙ୍କ ଆଖିରେ ଶାଶ୍ୱତ ହାସ୍ୟରେଖା ନାହିଁ—ତା ବଦଳରେ ଅଛି ଲହୁ ଓ ଲୁହର ଅବଶ୍ରାନ୍ତ ଧାରା ।

[ ସେତିକବେଳେ ପୃଷ୍ଠଭୂମିରେ ପ୍ରତିଫଳିତ ହୋଇଥିବା ଲହୁ ଓ ଲୁହ ଧାର ବହୁଥିବା ଜଗନ୍ନାଥଙ୍କ ପ୍ରତିଛବି ଅତି ସ୍ପଷ୍ଟ ଭାବରେ ଦିଶେ । ସାମନାପଟ ଅନ୍ଧକାର ହୋଇଯାଏ । ସ୍ୱର୍ଆଡ଼ୁ ଶୁଣାଯାଏ କରୁଣ ଚିତ୍କାର—ସବୁଆଡ଼େ ଅଶୁଭ ସଙ୍କେତ । ଧୀରେ ଧୀରେ ପଛପଟ ଅସ୍ପଷ୍ଟ ହୋଇ ଅନ୍ଧକାର ହୋଇଯାଏ । ଷ୍ଟେଜର ମଝି ଅଂଶ ଆଲୋକିତ ହୋଇଉଠେ । ଜୁଆ ଖେଳରେ ମାତିଛନ୍ତି ତିନିବନ୍ଧୁ । ]

—ଦୃଶ୍ୟାନ୍ତର—

ରମେଶ—(ତାସ୍‌ଗୁଡ଼ାକ ଫିଙ୍ଗି)—ଆଜ ଶଳା କିଛି ହେବନାହିଁ । ଲତିଫ୍ ମିଆଁ, ଆଣିଲ୍ ବଡ଼ା ପେଗ୍ ହୁଇସ୍କି । ଗଙ୍ଗାଜଳ ପଡ଼ିଲେ କାଳେ ଭାଗ୍ୟ ସୁଧୁରିବ !

( ଲତିଫ୍ ମିଆଁ ତିନୋଟି ଗ୍ଲାସରେ ତିନିବନ୍ଧୁଙ୍କୁ ତିନି ବଡ଼ ପେଗ୍ ହୁଇସ୍କି ଦେଇ ପ୍ରସ୍ଥାନ । )

ଜନ୍—ବୁଝିଲୁ ଭାଇ ରମେଶ ! ତୋର ଏ ଗଙ୍ଗାଜଳ ପ୍ରକୃତରେ ପବିତ୍ର ।

ରମେଶ—ଗଙ୍ଗା ଜଳଠୁ ବି ବେଶୀ ପବିତ୍ର । ବୁଝିଲୁ, ବେ ବୁଦ୍ଧୁ ଜନ୍‌ଓ୍ୟାକର୍ । ମୁଁ ହେଲି ବ୍ରାହ୍ମଣ ସନ୍ତାନ । ମୋତେ ସବୁଖୁଣ ମାଫ୍ । ମୁଁ ଯାହା ଛୁଇଁବି ନା ତାହା ଗଙ୍ଗାଜଳ ପାଲଟିଯିବ । ଯଦିବା କେତେବେଳେ କିଛି ପାପ କରିପକାଏ, ଜଗନ୍ନାଥଙ୍କୁ ଦୁଇଥର ହେଲ୍‌ଲୋ ମାରିଦେଲେ ନା ବେଟା କାଳିଆ ଏକ୍‌ଦମ୍ ଖସ୍, ସବୁ ପାପ ଖଲାସ୍ । (ଆଜାଦ୍‌କୁ ଉଦ୍ଦେଶ୍ୟ କରି) କିପରି ଆଜାଦ୍ ମିଆଁ ।

ଆଜାଦ୍—ଏକଦମ୍ ଓ୍ୟାଜିବ୍ ବାତ୍ । ହମ୍ ଭି କୁଛ୍ କମ୍ ନହିଁ । ମୋ ଆବା ବି ମୌଲବୀ । ଯେତିକି ପାର ପାପ କରିଯାଅ । ତାପରେ ଆଲ୍ଲାଙ୍କ ପାଖରେ କସୁର୍ ମାନିନେଲେ ସବୁ ମାଫ୍ ।

ଜନ୍—ଓ୍ୟାଣ୍ଡର୍‌ଫୁଲ୍ । ଆମେନ୍, ଆମେନ୍ ! ଓ ଗଡ୍ ଫର୍‌ଗିଭ୍ ଏଣ୍ଡ ଫର୍‌ଗେଟ୍ ଫର୍ ହ୍ୱାଟ୍ ଆଇ ହେଭ୍ ଡନ୍ ! ଯାହା ଦୋଷ କଲେ ବ କନ୍‌ଫେସନ୍ ବକ୍‌ସରେ ଥରେ ମାନିନେଲେ ସବୁ ଠିକ୍—ଏଭ୍ରି ଥିଙ୍ଗ୍ ଇଜ୍ ଓ. କେ. ।

ରମେଶ—କରେ ଜନ, ତୁ ତ ଠେକା ଧର୍ମଯାଜକଙ୍କ ଭଳିଆ କଥା କହୁଛୁ ।

ଆଜାଦ୍—ସେ ନହେଲେ ବ ତ ତାର ବାପା ଧର୍ମଯାଜକ । ରେଭେରେଣ୍ଡ ଚାର୍ଲସ୍ ମହାପାତ୍ରଙ୍କ ସେ ଏକ୍‌ଲୌତା ଔଲାଦ୍ ସୁଯୋଗ୍ୟ ସନ୍ତାନ ଶ୍ରେଷ୍ଠ। ରେଭେରେଣ୍ଡ ଜନ ଓ୍ୟାକର ଓରଫ୍ ଜନ୍ ମହାପାତ୍ର ।

( ସମସ୍ତେ ଠୋ ଠୋ ହୋଇ ହସି ଉଠିଲେ । ପାଶ୍ଚାତ୍ୟ ସଙ୍ଗୀତ ବାଜି ଉଠିଲା । ତିନି ବନ୍ଧୁ ସେମାନଙ୍କ ତିନିଜଣ ନୃତ୍ୟ-ବାନ୍ଧବୀଙ୍କ ସହ ଗୀତର ସୁରରେ ନାଚିବାକୁ ଲାଗିଲେ । )

—ଦୃଶ୍ୟାନ୍ତର—

[ ଧୀରେ ଧୀରେ ଆଲୁଅ ମଉଳି ଗଲା । ମଞ୍ଚର ମଧ୍ୟ ଭାଗ ଆଲୋକିତ ହେଲା ବେଳକୁ ରଙ୍ଗମଞ୍ଚରେ ଠିଆ ହୋଇଛନ୍ତି ପ୍ରଭୁଦତ୍ତ ଓ ହାସିନା । ]

ହାସିନା—ତୁମେ ଅମାନିଆ ହୁଅନାହିଁ ପ୍ରଭୁଦତ୍ତ ।

ପ୍ରଭୁ—ମାନେ ?

ହାସିନା—ଶାନ୍ତାର ପ୍ରସ୍ତାବକୁ ମାନିନିଅ ।

ପ୍ରଭୁ—କାରଣ ସେ ବିଶିଷ୍ଟ ଶିଳ୍ପପତିଙ୍କ ଅଲିଅଳ ଝିଅ – ନୁହେଁ ହାସିନା ?

ହାସିନା—ସେ ତୁମକୁ ଭଲ ପାଏ—

ପ୍ରଭୁ—ଭଲ ପାଏ ମୋର ଆଇ. ଏ. ଏସ୍‌ରେ ପ୍ରଥମ ହେବାଟାକୁ—

ହାସିନା—ସେଇଟି ତାର ବା ଭୁଲ୍ କ'ଣ ? ଏଇ ତ ଦୁନିଆର ନିୟମ ।

ପ୍ରଭୁ—କିନ୍ତୁ ସେ ଜାଣିନାହିଁ ଯେ ମୁଁ ଚାକିରି କରିବି ନାହିଁ । ଏବେ ମୁଁ ଅଧ୍ୟାପନା କରୁଛି କେବଳ ଅଧ୍ୟୟନରତ ହୋଇ ମୋର ଜ୍ଞାନ

ବୃଦ୍ଧି କରିବା ପାଇଁ ନଚେତ୍ ଧର୍ମ ସଂସ୍କାରରେ ମୁଁ ମୋର ସମସ୍ତ ବିଦ୍ୟାବୁଦ୍ଧି ନିୟୋଜିତ କରିବି, ଦରକାର ପଡ଼ିଲେ ବିପ୍ଳବ କରିବାକୁ ହେବ ।

ହାସିନା—( ଗୋଟିଏ ଦୀର୍ଘନିଶ୍ୱାସ ଛାଡ଼ି )—ଅମ୍ମିଜାନ୍ ମୋର ବାହାଘର ଆଜାଦ୍ ସହିତ ଠିକ୍ କରିବେ ବୋଲି ସ୍ଥିର କରିଛନ୍ତି ।

ପ୍ରଭୁ—( ସାମାନ୍ୟ ଅନ୍ୟମନସ୍କ ହେବାର ଅଭିନୟ କରି )—ଆଜାଦର ବ୍ୟବସାୟ ବହୁତ ଭଲ ଚାଲିଛି । ଅଳ୍ପ ଦିନରେ ସେ ଲକ୍ଷପତି ହୋଇଗଲାଣି ।

ହାସିନା—ଟଙ୍କା କାରବାର ସହଜରେ ଜଣକୁ ଧନୀ କରିପକାଏ ।

ପ୍ରଭୁ—ଆଉ ତୁମେ ଯେତେବେଳେ ଗୃହିଣୀ, ସେ ତୁମକୁ ବେଶ୍ ସୁହାଇବ ।

ହାସିନା—ତୁମେ ଏହା ହୃଦୟରୁ କହୁଛ ?

ପ୍ରଭୁ—ନିଶ୍ଚୟ । ଏକଦମ୍ ହୃଦୟର ରସାତଳରୁ ।

ହାସିନା—( ଅଭିମାନ ଭରା ଗଳାରେ )—ତାହାହେଲେ ତୁମେ ମୋତେ ଠିକ୍ ବୁଝିଛ ! ହଁ, ମୁଁ ତ ବିଧର୍ମୀ—

ପ୍ରଭୁ—ଏକ୍‌ଦମ୍ ଠିକ୍ ଭାବରେ ବୁଝିଛି ତୁମେ ମନ ଚୋରଣୀ, ମନ ଚୋରଣୀ । ତୁମେ ମନ ଚୋରି କରିଛ ।

ହାସିନା—( ଟିକିଏ ରାଗିଯାଇ )—ଦେଖ, ମୋତେ ଥଟ୍ଟା ଭଲ ଲାଗେନାହିଁ ।

ପ୍ରଭୁ—ଆରେ ଏଇଠି ଥଟ୍ଟା କେଉଁଠି ରହିଲା ? ତୁମେ ମୋର ମନ ଚୋରି କରି ନେଇଛ – ଏଇଟା କଣ ଥଟ୍ଟା ?

ହାସିନା—( ସାମାନ୍ୟ ହସି, ସାମାନ୍ୟ ଅଭିମାନରେ )—ଥଟ୍ଟା ନୁହେଁ ତ ଆଉ କଣ ? ହୃଦୟର ଜିନିଷଗୁଡ଼ିକ ଏମିତି ହାଲ୍‌କା ଭାବେ ନେବାଟା କଣ ଭଲ ?

ପ୍ରଭୁ—ତାହାହେଲେ ଖାଲି ବିଷୟରେ ତୁମେ କାହିଁକି କହୁଥିଲ, ଶୁଣେ ?

ହାସିନା—( କିଛି କହିପାରିଲା ନାହିଁ—କେବଳ ପ୍ରଭୁଦୟାଳଙ୍କୁ ଅନେଇ ରହିଲା ଏବଂ ସାମାନ୍ୟ ଖତେଇ ହେଲା ।)

ପ୍ରଭୁ—ବୁଝିଲ ମାଇଁ ଡିଅର ହାସିନା ବେଗମ୍ ! ତୁମେ ମୋତେ ଯେତିକ ବୁଝିଛ, ମୁଁ ତୁମକୁ ସେତିକ ବୁଝିଛି, ଆଉ ହିନସାଗ ସିରିଅସ୍ ବ୍ୟାପାରରେ ଯେତେବେଳେ ମୁଣ୍ଡ ଖେଳେଇବାକୁ ପଡ଼ୁଛି, ତୁମ ସହିତ ହିପହି ମିଠା ଖଟା, ଥଟ୍ଟା ତାମସା ମୋତେ ବେଶ୍ ଭଲ ଲାଗେ ।

ହାସିନା—ମୋତେ ବି ।

( ଏତିକବେଳେ ପ୍ରବେଶ କଲେ ପିଟର୍, ସଉକତ ଓ ବଲବୀର ସିଂ । )

ସଉକତ୍—ପିଟର୍, ବଲ୍‌ବୀର ଓ ମୁଁ ତୁମ ଦୁଇଜଣଙ୍କୁ ଖୋଜି ଖୋଜି ଥକି ଗଲୁଣି । କଣ ଧର୍ମଚର୍ଚ୍ଚା ଚାଲିଥିଲା ?

ପିଟର୍—ବୁଝିଲୁ ଭାଇ ସଉକତ୍, ପ୍ରଭୁଦୟାଳର ହିମାକ୍‌ରେ କଣ ଜୁଟିଛି କେଜାଣି ? ସେ ଭାବୁଛି, ଆମେ କେଇଜଣ ମିଶି ଦେଶର ପରିବର୍ତ୍ତନ କରି ପକାଇବା—

ହାସିନା—କାହିଁକି କରିପାରିବା ନାହିଁ ? ଧର୍ମ ଧର୍ମ ମଧ୍ୟରେ, ଜାତି ଜାତି ମଧ୍ୟରେ ବିଦ୍ୱେଷର ବିଷ ଆଜି ଆମ ସମାଜକୁ ଯେମିତି ଭାବରେ କଳୁଷିତ କରୁଛି, ତାକୁ ତ କିଏ ହେଲେ ଦୂର କରିବ ।

ପ୍ରଭୁ—ଖୁଦିରାମ, ବାଘା ଯତୀନ ଆଉ ଭଗତ୍ ସିଂଙ୍କ ଆତ୍ମା ଏବେ ବି ତୃଷିତ ହୋଇ ଦେଶର ଚାରିଆଡ଼େ ଘୂରି ବୁଲୁଛି । ସେ ତୃଷାକୁ ମେଣ୍ଟାଇବାକୁ ହେବ । ଦରକାର ପଡ଼ିଲେ ବୁକୁର ରକ୍ତ ଦେଇ ।

ସମସ୍ତେ—( ସମସ୍ୱରରେ )—ଆମେ ରାଜି ।

( ସେମାନଙ୍କ ସହିତ ସତେ ଯେମିତି ଆହୁରି ଅନେକେ ମିଶିଗଲେ । ସମବେତ କଣ୍ଠରେ ଶୁଣାଗଲା— )

—ଆମେ ପ୍ରସ୍ତୁତ । ବୁକୁର ରକ୍ତ ଦେଇ ଦେଶର ଏକତା ରଖିବାକୁ ଆମେ ବଦ୍ଧ ପରିକର । ଶୋଷଣ-

ସ୍ୱାଧୀନ ସମାଜ ଆଉ ଭେଦଭାବ ଶୂନ୍ୟ ସାମାଜିକ ନ୍ୟାୟ ଆମର କାମ୍ୟ, ଆମର ଧର୍ମ !

[ ଧୀରେ ଧୀରେ ସମବେତ କଣ୍ଠର ଶବ୍ଦ ଧ୍ୱନେଇ ଗଲା । ତା ସଙ୍ଗେ ସଙ୍ଗେ ମଞ୍ଚର ଆଲୁଅ ଅପସରି ଗଲା । ]

—ଦୃଶ୍ୟାନ୍ତର—

[ ଆଲୁଅ ପଡ଼ିଲା ବେଳକୁ ରମାକାନ୍ତ ବାବୁ ବ୍ୟସ୍ତ ହୋଇ ପଦଚାରଣା କରୁଥିଲେ । ]

ରମାକାନ୍ତ—ଶୁଣୁଛ ପ୍ରଭୁଦତ୍ତର ବୋଉ, ଶୁଣୁଛ !

ମାୟା—( ପ୍ରବେଶ କରି )—ଏମିତି ପାଟିରେ କାହିଁକି କରୁଛ ଭଲା ?

ରମାକାନ୍ତ—ପାଟି କରିବ ନାହିଁ ତ ଆଉ କଣ କରିବ ? ଢେଙ୍କାଣ୍ଡୋଳାଙ୍କ କୃପାରୁ ପୁତ୍ରଲାଭ କରି ପ୍ରଭୁଦତ୍ତ ନାଁ ସିନା ରଖିଲ ହେଲେ ପୁଅ ତୁମର କଣ କରୁଛି ଦେଖୁଛ ?

ମାୟା—କଲେଜରେ ପାଠ ପଢ଼ୁଛି ଆଉ କ'ଣ କରୁଛି ?

ରମା—ପାଠ ପଢ଼ୁ ନାହିଁ ସେ ବିଦ୍ରୋହ କରୁଛି । ଧର୍ମ ବିରୁଦ୍ଧରେ ବିଦ୍ରୋହ କରୁଛି, ମୋ ବିରୁଦ୍ଧରେ ବିଦ୍ରୋହ କରୁଛି । ଆଉ ନବୁଦ୍ଧିଆଙ୍କ ପରି ଆଇ. ଏ. ଏସ୍ ପରୀକ୍ଷାରେ ପ୍ରଥମ ହୋଇ ତାକୁ ପ୍ରତ୍ୟାଖ୍ୟାନ କରୁଛି ।

ମାୟା—ତା'ର ଯେଉଁଠି ମନ ତାକୁ ସେ କାମ କରିବାକୁ ଦିଅ । ଏମିତି ବାଧ ବାଧକତା କଲେ ତା'ର ମନ କଷ୍ଟ ହେବନି !

ରମା—ବୁଝିଲ ମାୟା ଦେବୀ ! ତୁମେହିଁ ପୁଅକୁ ନଷ୍ଟ କରିଛ । ଆହେ, ବାର ଜନ୍ମ ତପସ୍ୟା କଲେ ଆଇ. ଏ. ଏସ୍ ଚାକିରି ମିଳେ । ସେ ଚାକିରିରେ କେତେ କ୍ଷମତା, କେତେ ପ୍ରତିପତ୍ତି । ସବୁ ବୁଢ଼ା ବାବୁ ମାଷ୍ଟର ଚାକିରି କରିବେ—ଆଇ. ଏ. ଏସ୍ ମାନଙ୍କର ବୋକବୁଢ଼ା ହେବେ ।

ମାୟା—ମୋ ପୁଅକୁ ଏମିତି 'ବୋକଗୁ ବୁଢ଼ା' ବୋଲି କହି ପାରିବ ନି । ତା'ର କେତେ ବୁଦ୍ଧି ଅଛି । ଅଳ୍ପ ଦିନରେ ତା'ର କେତେ ସୁନାମ ହେଲଣି ।

ରମା—ହଁ, ସୁନାମ ନୁହେଁ ତ ଆଉ କ'ଣ ! ମ୍ଳେଚ୍ଛମାନଙ୍କୁ ଶ୍ରୀମନ୍ଦିରକୁ ଭର୍ତ୍ତି କରିବା ପାଇଁ ବିପ୍ଳବ କରିବ ବୋଲି ଯୋଜନା କରିଛି । ଆଉ ଗୋଟିଏ ମୁସଲମାନ ଟୋକା ସାଙ୍ଗରେ ମାତି ମୋର ମୁଣ୍ଡ ତଳକୁ କରି ସାରିଲଣି ।

ମାୟା—କାହା କଥା କହୁଛ ? ହାସିନା ବିଷୟରେ ? ବିଚରା କେଡ଼େ ଭଲ ଝିଅ । ମୁସଲମାନ ଘରେ ଜନ୍ମ ହେଲା ବୋଲି ତାକୁ ଆମେ ନାପସନ୍ଦ କରିବା ?

ରମା—ହେଲେ, ଲୋକେ କ'ଣ କହୁଛନ୍ତି ଶୁଣୁଛ ! ତୁମର ତ ଚୁଲିମୁଣ୍ଡରେ ସମସ୍ତ ବିଭବ—ଲୋକେ କ'ଣ ଥଟ୍ଟା ଟାପରା କରୁଛନ୍ତି ତୁମକୁ କେମିତି ମାଲୁମ୍ ହେବ ?

ମାୟା—ଚୁଲିମୁଣ୍ଡ କାମ କ'ଣ ଆମେ ବାଛିଛୁ ନା ପୁରୁଷ ଜାଣି ଆମ ଉପରେ ଲଦି ଦେଇଛି ? ହେଲେ, ଏବେ ପଢ଼ୁଆ ଝିଅକୁ ସେମିତି ଜବରଦସ୍ତି କରି ପାରିବ ନାହିଁ । ଏବେ ସେମାନେ ସ୍ୱାଧୀନ ମତ ଦେଉଛନ୍ତି ବୋଲି ସେମାନେ ହେଲେ ପୁରୁଷମାନଙ୍କ ସମାଲୋଚନାର ପାତ୍ର ।

ରମା—ହଁ ତମେ ସବୁ ସମାଜକୁ ସ୍ୱର୍ଗକୁ ଟେକିନେବ ! ଧର୍ମ ଧ୍ୱଜା ପୋତି ଦେବ ! ବୁଝିଲ, ମାଇପି ଜାତିର ମୁଣ୍ଡରେ ଯଦି ଏତିକି ମସଲା ଥା'ନ୍ତା, ସେମାନେ ତ ମୁକ୍ତିମଣ୍ଡପଠାରୁ ଆରମ୍ଭ କରି ସବୁଆଡ଼େ ନେତୃତ୍ୱ ଦିଅନ୍ତେ । ହେଲେ, ମୁକ୍ତି ମଣ୍ଡପରେ ସ୍ଥାନ ଅଛି ସ୍ତ୍ରୀ ମାନଙ୍କର ?

ମାୟା—ସେଥିପାଇଁ ତମେ ସବୁ ଦାୟୀ ।

ରମା—ଆହେ, ତାହାହେଲେ ତମେ ପୁଅକୁ ମତଉଛ ଆମ ବିରୁଦ୍ଧରେ ଲଢ଼ିବା ପାଇଁ ? ଆଉ ଦଳେ ଇଂରେଜୀ ପଢ଼ା ଲଫଙ୍ଗା ଜୁଟିଛନ୍ତି ତା ସାଙ୍ଗରେ ଦେଶକୁ ଟେକି ଧରିବା ପାଇଁ ।

ମାଷ୍ଟ୍ରା—ଦେଖ୍, ଲଫଙ୍ଗା ବୋଲି କହ ନାହିଁ । ତୁମ ପୁଅର ସବୁ ସାଙ୍ଗଙ୍କୁ ମୁଁ ଭଲ କରି ଜାଣେ । କାହାରି ଚରିତ୍ରରେ ଆଞ୍ଚ ଦେଲା ଭଳି କିଛି ନାହିଁ ।

ରମା—ତମେ ସବୁ ତାହାହେଲେ ମୋ ବିରୁଦ୍ଧରେ ଷଡ଼ଯନ୍ତ୍ର କରୁଛ ! ହଉ, ମୁଁ ବି ଦେଖିନେବି ।

(ରାଗ ତମ ତମ ହୋଇ ରମାକାନ୍ତ ବାବୁଙ୍କ ପ୍ରସ୍ଥାନ । )

—ଦୃଶ୍ୟାନ୍ତର—

[ ଆଲୋକ ଲିଭିଗଲା । ପୃଷ୍ଠଭୂମିରେ ଆଲୁଅ ଜଳିବା ବେଳକୁ ଦେଖାଗଲା ନଜ୍‌ରୁଲ୍ ଇସ୍‌ଲାମ୍‌ଙ୍କ ଘର । ପାଖରେ ତାଙ୍କ ସ୍ତ୍ରୀ ନସୀମ୍ ବାନୁ । ସେମାନଙ୍କ ବେଶଭୂଷା ସାଧାରଣ ଘରଣାପୁଙ୍କ ପରି ।

ନଜରୁଲ୍—ଆଜି ବେଳ ଗଡ଼ି ବସିଲାଣି । ଶ୍ରୀମନ୍ଦିରରୁ ମହାପ୍ରସାଦ ଆସି ନାହିଁ ।

ନସିମ୍—ବ୍ୟସ୍ତ ହେଉଛ କାହିଁକି ? ଆଜି ମହାପ୍ରସାଦ ସେବନ ନ କଲେ କ'ଣ ଚଳିବ ନାହିଁ ?

ନଜରୁଲ୍—ଏମିତି କଥା କୁହନି ନସିମ୍ । ଅବସର ନେବା ପରେ ମୁଁ ପୁରୀରେ ବସବାସ କରିଛି କେବଳ ପ୍ରଭୁଙ୍କ ଚରଣାମୃତ ପାଇବା ପାଇଁ । ସୂର୍ଯ୍ୟାସ୍ତ ପରେ ରମ୍‌ଜାନ୍ ମାସରେ ମୁଁ ମହାପ୍ରସାଦ ସେବନ କରି ଯେଉଁ ତୃପ୍ତି ପାଏ; ତାହା ମୁଁ ବର୍ଣ୍ଣନା କରି ପାରିବି ନାହିଁ ।

ନସିମ୍—ତୁମର ଏ ଗୁଣ ପାଇଁ ଲୋକେ ଆମକୁ କେତେ ଥଟ୍ଟା ଟାପରା କରୁଛନ୍ତି । ତୁମକୁ କାଫେର୍ ବୋଲି ପ୍ରଚାର କରୁଛନ୍ତି ।

ନଜରୁଲ୍—କରନ୍ତୁ । ମୁଁ ତ ମୋ ବୁଝିବା ମୁତାବକ କୋରାନ୍‌ର ନିର୍ଦ୍ଦେଶ ପାଳନ କରେ । ଗତ ପଚିଶ ବର୍ଷ ହେଲା ରମ୍‌ଜାନ୍ ମାସରେ ରୋଜା ପାଳନ କରି ଆସୁଛି ଏବଂ ନିର୍ମାଲ୍ୟ ସେବନ କରି ଉପବାସ ଭଙ୍ଗ କରି ଆସୁଛି । ମୋ ମତରେ ସମସ୍ତଙ୍କର ଭଗବାନ ସମାନ ।

ଟେକାଡେ'ଲାଙ୍କୁ କାହିଁ ମୋତେ ଘର ଭଲ ଲାଗେ । ମୁଁ ତ ଅନ୍ୟ କାହାକୁ ବାଧ କରୁନାହିଁ । ହେଲେ, ମୋ ରୁଚି ଉପରେ ଅନ୍ୟ-ମାନଙ୍କ ମନ୍ତବ୍ୟ କରୁଛନ୍ତି କାହିଁକି ?

ନସିମ୍—ଆମ ଧର୍ମରେ ପୁତ୍ତଳିକା ପୂଜା ନିଷେଧ । ତଥାପି ତୁମେ ପତିତପାବନଙ୍କ ମୂର୍ତ୍ତି ରଖି ପୂଜା କରୁଛ ।

ନଜରୁଲ୍—ମକ୍କାର କାବା ମସ୍‌ଜିଦ୍‌ରେ ହଜରତ୍ ମହମ୍ମଦ ଯେତେବେଳେ ସବୁ ମୂର୍ତ୍ତିକୁ ସ୍ଥାନାନ୍ତରିତ କଲେ; ସେ ଯେଉଁ କଳା ମୁଗୁନି ପଥରକୁ ସେହି ଆରାଧନା ସ୍ଥଳରେ ଛାଡ଼ି ଯାଇଥିଲେ, ତାହା ହେଉଛି ଜଗନ୍ନାଥଙ୍କ ବ୍ରହ୍ମ । ଜଗନ୍ନାଥ ପ୍ରକୃତରେ ଏକ ପ୍ରତୀକ । ନଚେତ୍ ହାତ ପାଦ ନ ଥିବା ଗୋଟିଏ କଳା ମୂର୍ତ୍ତିରେ ଦୁନିଆ-ଯାକର ବିଶ୍ୱ ବିଭବ ଏକଜୁଟ ହୋଇଛି କିମିତି ? ତୁମେ ଥରେ ନିରେଖି କରି ଦେଖୁଛ ମୋର ପତିତପାବନଙ୍କୁ ? ଦୁନିଆର ସମସ୍ତ ସୌନ୍ଦର୍ଯ୍ୟ ଯେମିତି ସେଇଠି ଠୁଳ ହୋଇଛି ।

ନସିମ୍—ହଉ, ତୁମ ଧର୍ମ ତେଣେ । ସେତିକରେ ଥାଉ । ହାସିନାର ବାହାଘର ବିଷୟରେ କ'ଣ ଭାବିଛ କହିଲ ।

ନଜରୁଲ୍—ଝିଅ ବଡ଼ ହେଲାଣି । ପାଠଶାଠ ପଢ଼ିଛି । କଲେଜ୍‌ରେ ଲେକ୍‌ଚରର୍ ଗିରିକରି କରୁଛି । ତା'ର ଯେଉଁଠି ଇଚ୍ଛା ସେଇଠି ମୁଁ ବାହାଘର କରେଇ ଦେବି ।

ନସିମ୍—ନା' ନା', ସେମିତି କେମିତି ହେବ ? ତା ପାଇଁ କେତେ ଭଲ ପାତ୍ର ଆସୁଛନ୍ତି । ମୋ ମତରେ ଆଜାଦ୍‌ର ପ୍ରସ୍ତାବକୁ ଗ୍ରହଣ କରି-ନେବାଟା ଭଲ ।

ନଜରୁଲ୍—ତୁମେ ବୁଝି ବିଚାରି ଏ କଥା କହୁଛ ତ ?

ନସିମ୍—ଆଉ କ'ଣ ଉପରଠାଉରିଆ କହୁଛି ? ମୋ ଜନ୍ମ କଲା ଝିଅ । ତା ବିଷୟରେ ମୁଁ ଚିନ୍ତା କରିବି ନାହିଁ ? ଆଜାଦ୍ ନିଜ ଗୋଡ଼ରେ ଛିଡ଼ା ହୋଇ ସାରିଲାଣି । ଅଳ୍ପଦିନ ଭିତରେ ଲକ୍ଷ ଲକ୍ଷ ଟଙ୍କା ରୋଜଗାର କଲାଣି । ତାକୁ ବାହାହେଲେ ହାସିନା ବହୁତ ସୁଖରେ

ରହିବ । ମୌଲବୀ ସାହେବ ବି ବଡ଼ିଆ ଲୋକ । ତମେ ଯେମିତି ଜଗନ୍ନାଥ ଭକ୍ତ ହୋଇଛ ନା, ଅନ୍ୟ କେହି ହୋଇଥିଲେ ମୌଲବୀ ସାହେବ ତାଙ୍କୁ କାଫେର୍ ବୋଲି ଧର୍ମରୁ ବାସନ୍ଦ କରି ସାରନ୍ତେଣି । ହେଲେ, ତମକୁ ସେ କେତେ ଖାତିର୍ କରନ୍ତି ।

ନଜରୁଲ୍—( କିଛି କହିଲେ ନାହିଁ । କେବଳ ଅନୁସନ୍ଧାନକାରୀ ହସ ହସିଲେ । )

ନସିମ୍—ଏମିତି ହସୁଛ କ'ଣ ମ ? ଏ ପ୍ରସ୍ତାବ ବିଷୟରେ ତମର ମତ କ'ଣ କହୁନ ?

ନଜରୁଲ୍—ଶୁଣିବ ? ଶୁଣ, ମୁଁ ତୁମ ସହିତ ଏକମତ ନୁହେଁ, ବାହାରର ଚାକଚକ୍ୟ ବାହାଘର ପାଇଁ ଯଥେଷ୍ଟ ନୁହେଁ ।

ନସିମ୍—ମାନେ ?

ନଜରୁଲ୍—ଏଇ ଧର ମୌଲବୀ ସାହେବଙ୍କ କଥା । ତାଙ୍କର ଚାରି ଚାରିଟା ସ୍ତ୍ରୀ । ଭଜନ୍ତେ ପିଲାପିଲି । ( ଟିକିଏ ଭାବି ) ଆଚ୍ଛା ନସିମା, ତୁମର ଯଦି ଦୁଇ ତିନୋଟି ସଉତୁଣୀ ଥାନ୍ତେ ଏବଂ ତିନି ଚାରିଜଣ ଶାଶୁ ଥାନ୍ତେ, ତୁମକୁ କେମିତି ଲାଗନ୍ତା କହିଲ ?

ନସିମ୍—ମତେ ଅଛା ଭଲ ଲାଗେ ନାହିଁ । ଆଉ ମୌଲବୀ ସାହେବଙ୍କ ଚାରିଟା ସ୍ତ୍ରୀ ବୋଲି ଆଜାଦ୍ ଯେ ଚାରିଟା ବାହା ହେବ ତାହା ତ କେହି କହିପାରିବେ ନାହିଁ ।

ନଜରୁଲ୍—ଯେଉଁ ଘରର ଦୁନିଆଦ୍ ଯେମିତି । ଆଜାଦ୍ ଚାରିଟା ସ୍ତ୍ରୀ ବାହା ହେବ ନାହିଁ ବୋଲି କିଏ କହି ପାରିବ ? ଆଉ ମୁଁ ଝିଅକୁ ଅନିଶ୍ଚିତତା ଭିତରକୁ ଠେଲିଦେବାକୁ ଚାହେଁନା ।

ନସିମ୍—ଯେ ଯାହାହେଉ, ପିଲାଟା ଭଲ । ପିଲାଟା ଯୋଗ୍ୟ ।

ନଜରୁଲ୍—ହଁ, ତା ନୁହେଁ ତ ଆଉ କଣ ? ପିଲାଟା ମଦ ପିଏ । ସେ ତ ଆଜିକାଲିକାର ଭଲ ହେବାର ଲକ୍ଷଣ । ଆଉ ବ୍ଲେକ୍ କାରବାର କରେ । ସେ ବି ଆଜିକାର ଯୋଗ୍ୟତାର ମାପକାଠି । ଆଉ ତା ଛଡ଼ା, ଦୁନିଆର ଯେତେସବୁ ଭଲ ଗୁଣର ଅଧିକାରୀ ସେ—

ନସିମ୍—ଅଛା କରୁଛ ନା କ'ଣ ? ପର ପିଲାକୁ ଏମିତି ବଦନାମ୍ କରିବା ଉଚିତ ନୁହେଁ ।

ନଜରୁଲ୍—ସବର୍ କର ବେଗମ୍ ସାହିବା ସବର୍ କର । ମୁଁ ତ ତା ବିରୁଦ୍ଧରେ କାହାକୁ କହୁନାହିଁ । ତୁମେ ବିବାହ ପ୍ରସ୍ତାବ ଦେବାରୁ ତମକୁ କେବଳ ଠିକ୍ ଜିନଷର ଆଭାସ ଦେଇଦେଉଛି । ( ଟିକଏ ଅଟକି ) ଦେଖ ହାସିନାର ଅମ୍ମିଜାନ୍, ତୁମେ ଯେମିତି ହାସିନାର ଜନ୍ମଦାତା ମା, ମୁଁ ନଜରୁଲ୍ ଇସଲାମ୍ ମଧ୍ୟ ତାର ଜନ୍ମଦାତା ବାପ । ମୌଲବୀ ସାହେବଙ୍କ ଚଳଣି ଆଉ ଆମ ଚଳଣି ଭିତରେ ତେର୍ ତଫାତ୍ । ସେମାନେ ହେଲେ କଟ୍ଟରବାଦୀ ଲୋକ । ଆମେ ସାଦା-ସିଧା ଲୋକ । ସେମାନେ ଗୋଟିଏ ମେରୁରେ ତ ଆମେ ଆଉ ଗୋଟିଏ ମେରୁରେ ।

( ଏତିକିବେଳେ ହାସିନା ଏବଂ ପ୍ରଭୁଦତ୍ତଙ୍କ ପ୍ରବେଶ । ସେମାନଙ୍କ ପଛେ ପଛେ ମହାପ୍ରସାଦ ଧରି ନଜରୁଲ୍‌ଙ୍କ ଚାକର ପ୍ରବେଶ କରେ ଏବଂ ମହାପ୍ରସାଦ ଧରି ସେ ଘର ଭିତରକୁ ଚାଲିଯାଏ । )

ନଜରୁଲ୍—ଏ ତ ଅମୃତ ବେଳା । ମହାପ୍ରସାଦ ଆସି ପହଞ୍ଚିଲା—ତା ସାଙ୍ଗକୁ ପ୍ରଭୁଦତ୍ତ ଓ ହାସିନା । ଚାଲ ସମସ୍ତେ ମିଶି ମହାପ୍ରସାଦ ସେବନ କରିବା ।

ନସିମ୍—ଚାଲ୍ ମା'ହାସି । ଆମେ ଖାଇବାର ବନ୍ଦୋବସ୍ତ କରିବା । ଏମାନେ କଥାବାର୍ତ୍ତା ହେଉଥାନ୍ତୁ ।

( ନସିମ୍ ଓ ହାସିନା ଘର ଭିତରକୁ ଚାଲିଗଲେ । )

ପ୍ରଭୁ—ଜଗନ୍ନାଥଙ୍କୁ ଦର୍ଶନ କରିବାର ସୁଯୋଗ ନପାଇ ମଧ୍ୟ ଆପଣଙ୍କ ଅଟଳ ଭକ୍ତି ଦେଖି ମୁଁ ଅବାକ୍ ହୋଇଯାଉଛି ମଉସା ।

ନଜରୁଲ୍—କିଏ କହିଲା ମୁଁ ପ୍ରଭୁଙ୍କ ଦର୍ଶନ ପାଇନାହିଁ ? ପ୍ରତି ରଥଯାତ୍ରାରେ ପତିତପାବନଙ୍କୁ ମନଭରି ଦର୍ଶନ କରି ମୋର ବର୍ଷକର ଦେଖିବାର ତୃଷା ମୁଁ ମେଣ୍ଟାଇ ଦିଏଁ ।

ପ୍ରଭୁ—ଆଉ ଆମେ ମୂର୍ଖ ଯେ ଆପଣଙ୍କ ଭଳି ଧର୍ମପରାୟଣ ବ୍ୟକ୍ତିମାନଙ୍କୁ ମନ୍ଦିର ଭିତରକୁ ପ୍ରବେଶ କରିବାକୁ ଦେଉନାହୁଁ ।

ନଜରୁଲ୍—ସବୁ ଧର୍ମରେ ସେମିତି କଟ୍ଟରପନ୍ଥୀ ଲୋକେ ଅଛନ୍ତି । ଆମ ଦୁର୍ଭାଗ୍ୟ ଯେ ସେହି କଟ୍ଟରପନ୍ଥୀମାନେ ହିଁ ସବୁ ଧର୍ମର ଶାସନ-ଡୋରି ଧରିଛନ୍ତି ।

ପ୍ରଭୁ—ଆମକୁ ତାର ମୁକାବିଲା କରିବାକୁ ହେବ, ତାର ପ୍ରତିକାର କରିବାକୁ ହେବ । ଯେତେଦିନ ପର୍ଯ୍ୟନ୍ତ ଜାତି-ଧର୍ମ-ବର୍ଣ୍ଣ ନିର୍ବିଶେଷରେ ପ୍ରଭୁଙ୍କ ଭକ୍ତମାନଙ୍କୁ ମନ୍ଦିର ପ୍ରବେଶର ଅଧିକାର ଦିଆଯାଇ ନାହିଁ, ମୁଁ ଶପଥ ନେଇଛି ସେତେଦିନ ପର୍ଯ୍ୟନ୍ତ ଶ୍ରୀମନ୍ଦିର ଭିତରକୁ ମୁଁ ପ୍ରବେଶ କରିବି ନାହିଁ । କୃଷ୍ଣ ଚୈତନ୍ୟଙ୍କର ବିଦେଶୀ ଭକ୍ତ-ମାନଙ୍କ ସହିତ ମୁଁ ବାର୍ତ୍ତାଳାପ କରିଛି । ସନାତନ ଧର୍ମ ସମ୍ବନ୍ଧରେ ସେମାନଙ୍କର ଗଭୀର ଜ୍ଞାନ ଅଛି । ଅଥଚ ସନାତନ ଧର୍ମ ବିଷୟରେ ଅଜ୍ଞ ଲୋକମାନଙ୍କ ଦ୍ୱାରା ସେମାନଙ୍କୁ ମନ୍ଦିର ପ୍ରବେଶ କରିବାରେ ବାରଣ କରାଯାଉଛି । ସେମାନେ ନିର୍ଲିପ୍ତ ଭାବରେ ଭଗବାନଙ୍କ ନାମ ଭଜନ କୀର୍ତ୍ତନ କରି ସିଂହଦ୍ୱାରରୁ ପ୍ରତ୍ୟହ ଫେରି ଆସୁଛନ୍ତି । ଦ୍ୱାରପାଳର ବାରଣରେ ଅନୁଶୋଚନା ନାହିଁ ସେମାନଙ୍କର । ସେମାନେ ହିଁ ପ୍ରକୃତ ଭକ୍ତ ।

ନଜରୁଲ୍—ଦେଖାଯାଉ, ଆଲ୍ଲାଙ୍କ କଣ ମରଜି ! ଆମେ ପାଠଶାଠ ପଢ଼ି ଶିକ୍ଷିତ ହୋଇଛୁ—ଧୀରେ ଧୀରେ ଆମେ ସଂସ୍କାରପନ୍ଥୀ ହେବା କଥା । କିନ୍ତୁ ମୁଁ ଦେଖୁଛି ପ୍ରତ୍ୟେକ ଧର୍ମାବଲମ୍ବୀମାନଙ୍କର ସହନ-ଶୀଳତା ଧୀରେ ଧୀରେ କମିଯାଉଛି । ବିଭିନ୍ନ ମତାବଲମ୍ବୀମାନଙ୍କ ସହାବସ୍ଥାନ ଏବେ ଦୁରୁହ ହୋଇ ପଡ଼ୁଛି ।

( ଭିତରୁ ହାସିନାର ସ୍ୱର ଶୁଣାଗଲା—'ଆବ୍‌ବାଜାନ୍ ! ବଡ଼ା ହେଲାଣି । ପ୍ରଭୁଦତ୍ତ ବାବୁଙ୍କୁ ଧରି ଭିତରକୁ ଆସନ୍ତୁ ।' )

ନଜରୁଲ୍—ହଉ । ଚାଲ ପ୍ରଭୁଦତ୍ତ । ଭିତରୁ ଡାକରା ଆସିଲାଣି ।

( ନଜରୁଲ୍ ଏବଂ ପ୍ରଭୁଦତ୍ତଙ୍କ ପ୍ରସ୍ଥାନ । ରଙ୍ଗମଞ୍ଚ ଧୀରେ ଧୀରେ ଅନ୍ଧାର ହେଲା ବେଳକୁ ଭଜନ ଓ କୀର୍ତ୍ତନର ସୁର ମଧ୍ୟରେ ଆଲ୍ଲା ହୋ ଆକବର୍ ଧ୍ୱନି ନିନାଦିତ ହୋଇଉଠିଲା । )

—ଦୃଶ୍ୟାନ୍ତର—

[ ବଡ଼ଦାଣ୍ଡ । ଡିସ୍କୋ ଡାନ୍ସର ସଙ୍ଗୀତରେ ରଙ୍ଗମଞ୍ଚ ମୁଖରିତ । ମଞ୍ଚ ଆଲୋକିତ ହେଲା । ସଙ୍ଗୀତ ଧ୍ୱନି ମିଳି ଗଲା ବେଳକୁ ରମେଶ, ଆଜାଦ୍ ଓ ଜନ୍‌ର ପ୍ରବେଶ ।

ଆଜାଦ୍—ଦେଖ୍ ଭାଇ ରମେଶ, ମୁଁ ଏଥର ଆଉ ପ୍ରଭୁଦତ୍ତକୁ ଛାଡ଼ିନାହିଁ । ଦେଖିହୋ, ମୋ ସହିତ ଲାଗୁଛି, ମୋ ସହିତ ପ୍ରତିଯୋଗିତା କରୁଛି । ହାସିନା ଓ ମୋର ବାହାଘର ପାଇଁ ସେ ହିଁ ପ୍ରଧାନ ପ୍ରତିବନ୍ଧକ । ତାକୁ ପାନେ ଦେବାକୁ ହେବ ।

ରମେଶ—ସେ ତ ବାଁ ହାତ କା ଖେଲ୍ । ଖାଲି ରମାକାନ୍ତ ବାବୁଙ୍କ ପୁଅ ବୋଲି ରକ୍ଷା ପାଇଯାଉଛି, ନହେଲେ ପଣ୍ଡା ପଡ଼ିଆଗମାନେ ତାକୁ ପାନେ ଦେଇସାରନ୍ତେଣି ।

ଜନ୍—ତା ବିରୁଦ୍ଧରେ ଜନମତ ସୃଷ୍ଟି କରିବାକୁ ହେବ । ଗୁଜବ ପ୍ରଚାର କରିବାକୁ ହେବ । ମୁଁ ତାର ଏକ ଯୋଜନା କରିଛି ।

—ଦୃଶ୍ୟାନ୍ତର—

[ ମଞ୍ଚ ଅନ୍ଧକାର ହୋଇଗଲା । Freeze । ଡିସ୍କୋ ଗୀତର ତୀବ୍ରତା ବହୁ ମାତ୍ରାରେ ଘଟିଗଲା । ମଞ୍ଚର ଅଗ୍ରଭାଗ ଆଲୋକିତ ହୋଇଗଲା । ପ୍ରବେଶ କଲା ଜଣେ ମାଙ୍କଡ଼ ଖେଳଉଥିବା ମଦାରୀ ଆଉ ତା ସଙ୍ଗରେ ହନୁମାନ ବେଶରେ ଜଣେ ପୁରୁଷ ଏବଂ ପାଣ୍ଡି ବେଶରେ ଜଣେ ସ୍ତ୍ରୀ । ତାଲିମ ପ୍ରାପ୍ତ ହନୁମାନ ଓ ପାଣ୍ଡି ଆଣି ପାରିଲେ ଉତ୍ତମ—ସେ ପରିସ୍ଥିତିରେ ସେମାନଙ୍କ କଥାବାର୍ତ୍ତା ପାଇଁ ହନୁମାନର ପୁରୁଷ କଣ୍ଠ ଓ ପାଣ୍ଡିର

ନାସ୍ତ କଣ୍ଠର ଯୋଗାଡ଼ କରିବାକୁ ହେବ । ମଦାଷ୍ଟର ନର୍ଦ୍ଦେଶରେ ସେମାନେ ଡ୍ରମ୍କୋ ସଙ୍ଗୀତର ସୁରେ ସୁରେ ମଞ୍ଚ ଉପରେ ନାଚିବାକୁ ଲାଗିଲେ । ଗୃହପାଖରେ ଲୋକଙ୍କ ଖ୍ରେଡ଼ ଜମିବାକୁ ଲାଗିଲା । ଧୀରେ ଧୀରେ ସଙ୍ଗୀତର ସୁର ଧିମେଇ ଗଲା । ]

ମଦାଷ୍ଟ—(ହାତରେ ବାଜା ବଜେଇ ବଜେଇ ) ବାବୁମାନଙ୍କୁ ବାବୁଆଣୀ-ମାନଙ୍କୁ ସଲାମ କର । (ହନୁମାନ ଓ ପାଣ୍ଡି ହାତ ଟେକ ଗୃହଆଡ଼େ ବୁଲ ଆସି ସମସ୍ତଙ୍କୁ ସଲାମ କଲେ । ) ଏ ସହସ୍ରବାବୁ ଏବଂ ବାବୁଆଣୀମାନଙ୍କୁ ସଲାମ କର ଆମର କାହାଣୀ ଆରମ୍ଭ କରୁଛୁ । ( ତାପରେ ବାଜା ବଜେଇ ହନୁମାନଙ୍କୁ ନଚେଇ ନଚେଇ ପ୍ରଶ୍ନ କଲା ) ଆଚ୍ଛା ତୋର ନାମ କହିଦେଲୁ ଓସ୍ତାଦ ।

ହନୁମାନ—ପ୍ରଭୁଭକ୍ତ ହନୁମାନ ।

( ତାପରେ ବାଜା ବଜେଇ ବଜେଇ ବାଡ଼ିକୁ ନଚେଇ ନଚେଇ ପ୍ରଶ୍ନ କଲା— )

ମଦାଷ୍ଟ—ତୋର ନାମ କ'ଣ ବତେଇ ଦେଲୁ ସୁନ୍ଦରୀ ।

ପାଣ୍ଡି—ହାସିନା ପାଣ୍ଡିମା ।

ମଦାଷ୍ଟ—ଆଜ୍ଞାମାନେ, ଆମର କାହାଣୀ ଶୁଣନ୍ତୁ, ମନ ଦେଇ ଶୁଣନ୍ତୁ । ଏଇ ଏକ ଅଜବ୍ କାହାଣୀ । ଗୋଟିଏ ପୁରୁଷ ହନୁମାନର ଗୋଟିଏ ସ୍ତ୍ରୀ ପାଣ୍ଡିମାଙ୍କଡ଼ ସଙ୍ଗେ ପ୍ରେମ କାହାଣୀ—ମଡର୍ଣ୍ଣ (ମଡେନ୍) ପ୍ରେମ କାହାଣୀ । ଆଚ୍ଛା ବେଟା ହନୁମାନ ତୁ ବତେଇ ଦେ ତୋର କଥା ।

ହନୁମାନ—ହାସିନାକୁ ପ୍ୟାର କରୁଛୁ ।

ମଦାଷ୍ଟ—ଆଉ ହାସିନା ବି ?

ହନୁମାନ—ଜୀ ।

ମଦାଷ୍ଟ—ଆଚ୍ଛା ବେଟୀ ହାସିନା, ହନୁମାନ୍ ତୋତେ ପ୍ୟାର କରୁଛି ?

ପାଣ୍ଡି—ବହୁତ ।

ମଦାଖ—ଆଉ ଭୁ ?

ପାଣ୍ଡ—( ଦାନ୍ତ ଦେଖେଇ, ଖଚେଇ ହୋଇ ) ଥୂ !

ମଦାଖ—ସଫା ସଫା କହିଦେ ।

ପାଣ୍ଡ—ମୋତେ ଭଗେଇ ଆଣିଛି ବେସରମ୍ ହନୁମାନ । ନ ହେଲେ ମୁଁ ବେକୁଫ୍‌କୁ କେ ପ୍ୟାର କରିବ ?

ହନୁମାନ—ମିଛ—ଝୁଟ୍ !

ପାଣ୍ଡ—ସତ—ସଚ୍ ।

( ତା'ପରେ ହନୁମାନ ଓ ପାଣ୍ଡ ମଧ୍ୟରେ ମିଛ-ସତ ହୋଇ କିଛି ସମୟ ବାକ୍ୟ ବିନିମୟ ହେବ । କିଛି ସମୟ ପରେ ପାଣ୍ଡ କାନ୍ଦି କାନ୍ଦି ଗୋଟିଏ କଣରେ ବସି ବାହୁନିବାକୁ ଲାଗିଲା । )

ପାଣ୍ଡ—ଆରେ ନିଆଁ ଲଗା ପ୍ରଭୁଭକ୍ତ ହନୁମାନ, ମୋତେ ମୋର ବାଲମ୍ ଆଜାଦ୍ ପାଣ୍ଡ ପାଖରୁ ଭଗେଇ ନେଇଛୁ ରେ । ମୋତେ ରକ୍ଷା କର ରେ ।

ହନୁମାନ—( ଗୀତ ସୁରରେ ) ନାଇଁ ନାଇଁ ମିଛ କଥା
ମୁଁ ଧରୁଛି ତା'ର ମଥା ।
ପ୍ୟାର କରି ମୋତେ ଡାକ ଆଣିଲା
ଭଗେଇ ନେଇଛୁ ବୋଲି ଝୁଟ କହିଲା ।

ମଦାଖ—( ଗୁଣ୍ଟ ତଳେ ବଜେଇ ) ସଚ୍ ବତାରେ ପ୍ରଭୁଭକ୍ତ ହନୁମାନ ।

ହନୁମାନ—ସଚ୍ କହୁଛି । ମାଇ ବାପ୍ କସମ୍ । ସହାଖ ବାବୁ—ବାବୁଆଣୀମାନଙ୍କ କସମ୍ ।

ମଦାଖ—ଗାଲୁ କରୁଛୁ ବେଇମାନ ? ( ଗୁଣ୍ଟ ମାରିବାର ଅଭିନୟ କଲା । ) ହନୁମାନ ଡେଇଁ ଡେଇଁ ନାଚିବାକୁ ଲାଗିଲା ।)

ମଦାଖ—ସଚ୍ ବତାଓ ।

ହନୁମାନ—ହଁ ସାହେବ୍, ଭଗେଇ ଆଣିଛି ।

ମଦାଶ୍ରୀ—ଭୁଲ୍ କବୁଲ୍ କର ।

ହନୁମାନ—( କାନ ଧରି ଭୁଲ୍ କବୁଲ୍ କଲା । ତା'ପରେ ପାଣ୍ଡି ପାଖକୁ ଯାଇ — ) ମୁଝେ ମାଫ୍ କରୋ ।

ପାଣ୍ଡି—ମାଫ୍ କିଆ । ମଗର୍ ଓ୍ୟାଦା କରୋ, ତୁ ଆଉ ମୋର ପାଖକୁ କେବେ ଆସିବୁ ନାହିଁ ।

ମଦାଶ୍ରୀ—ଖତମ୍ ହୁଇ ମେରୀ ମଜନ୍ ପ୍ୟାର୍ କି କାହାଣୀ । ସଲାମ୍ କରୋ । ମାଗୋ ବକ୍‌ସିସ୍ ।

( ମଦାଶ୍ରୀ ବାଜା ବଜାଇଲା । ହନୁମାନ ଓ ପାଣ୍ଡି ସଲାମ୍ କରି ପଇସା ଅସୁଲ କରିବାରେ ଲାଗିଲେ । )

—ଦୃଶ୍ୟାନ୍ତର—

[ ସାମନା ପଟ ଅନ୍ଧାର ହୋଇ ପୁଣି ଷ୍ଟେଜ୍ ମଝି ଆଲୋକିତ ହେଲା । ରମେଶ, ଆଜାଦ୍ ଏବଂ ଜନ୍‌ଙ୍କ ମଧ୍ୟରେ କଥୋପକଥନ । ]

ଜନ୍—କୈସା ବେଟା ଆଜାଦ୍ । ଦେଖିଲୁ, କେମିତି ପାଲି ଲଗେଇ ଦେଲି । କେମିତି ଗୁଜବ୍ ଫଇଲାଇ ଦେଲି ?

ଆଜାଦ୍—ସବୁ ଠିକ୍ ଯେ, ଲୋକେ ତ ଶାନ୍ତ ପ୍ରଭୁଦତ୍ତ ସପକ୍ଷରେ ଫୁସ୍‌ଫାସ୍ ହେଉଛନ୍ତି । ବରଂ ମୋତେ ବଦ୍‌ନାମ୍ କରୁଛନ୍ତି ।

ରମେଶ—ତା'ର କି ବ୍ୟବସ୍ଥା କରିବାକୁ ହେବ । କିନ୍ତୁ ହାସିନା ବିରୁଦ୍ଧରେ ଅପପ୍ରଚାର କରି ହେଉ ନାହିଁ । କାରଣ ତୋର ଦଲ୍ ତ ସେଇଠି ଲାଗି ରହିଛି ।

ଆଜାଦ୍—ଏଥର ହାସିନାକୁ ଆଖିର୍ ମୌକା ଦେଉଛୁ । ସେ ଯଦି ମୋ ବାହାଘର ପ୍ରସ୍ତାବରେ ରାଜି ହୋଇଯାଏ ତ ଭଲ ନହେଲେ୍ ତା'ର ଉଚିତ୍ ବ୍ୟବସ୍ଥା କରିବାକୁ ହେବ ।

ଜନ୍—ବେଶ୍, ତାହାହେଲେ, ସ୍ୱେ ପ୍ରସ୍ତାବ ଉପରେ ଗୋଟିଏ ଗ୍ଲେଟକାଟିଆ ପାର୍ଟିର ବନ୍ଦୋବସ୍ତ ହେଉ ।

ରମେଶ—ସ୍ଲେଟକାଟିଆ କାହିଁକି ? ପୂରା କଡ଼ା ମାର୍କାରେ । ଖାନା, ପିନା, ନାଚ୍‌ନା ।

( ମଞ୍ଚରେ ଆଲୋକ ଧୂଆଁଳିଆ ହୋଇଗଲା । କ୍ଲବ ହାଉସ୍‌ରେ ସଙ୍ଗୀତର ତାଳେ ତାଳେ ବନ୍ଧୁବର୍ଗ ବଲ୍ ଡାନ୍‌ସର ଅଭିନୟ କଲେ । ଆଲୁଅ ଧୀରେ ଧୀରେ ଲିଭିଗଲା । )

—ଦୃଶ୍ୟାନ୍ତର—

[ ମଞ୍ଚ ଆଲୋକିତ ହେବା ସମୟରେ ସିଂହଦ୍ୱାରର ଦୃଶ୍ୟ । କୃଷ୍ଣ ଚେତନା ସମିତିର ସଦସ୍ୟମାନଙ୍କର "ହରେ କୃଷ୍ଣ ହରେ କୃଷ୍ଣ କୃଷ୍ଣ କୃଷ୍ଣ ହରେ ହରେ, ହରେ ରାମ ହରେ ରାମ ରାମ ରାମ ହରେ ହରେ" କୀର୍ତ୍ତନର ସହିତ ପ୍ରବେଶ । ସେମାନେ ତନ୍ମୟ ହୋଇ ନିଜର ଭଜନ କୀର୍ତ୍ତନରେ ମଗ୍ନ ଯାଇଥାନ୍ତି ଅକ୍ରେସ୍ତାନ୍ତ ନିକଟରେ । ପ୍ରଭୁଦତ୍ତ, ସତ୍ୟକାନ୍ତ, ପିଟର, ବଲ୍‌ବୀର ସିଂହ ପ୍ରଭୃତି ତାର ସାଥୀମାନେ ଉପସ୍ଥିତ ଥା'ନ୍ତି । ମନ୍ଦିର ଭିତରୁ ବ୍ୟସ୍ତ ହୋଇ ପଣ୍ଡା ଚାଲିଆସେ । ]

ପଣ୍ଡା—ପ୍ରତିଦିନ ଗୁଡ଼ାଏ ଅମଙ୍ଗଳିଆ ଏଇଠି ଜୁଟିଛନ୍ତି । ଛି ଛି ଛି ।

ପ୍ରଭୁ—ଏ କଣ କହୁଛ ତୁମେ ? ସେମାନେ ପ୍ରଭୁ ଚକାଡୋଳାଙ୍କର ପରମ ଭକ୍ତ । ସେମାନଙ୍କୁ ଅମଙ୍ଗଳିଆ ବୋଲି କହିବାକୁ ତୁମକୁ ଲଜ ଲାଗୁନାହିଁ ?

ପଣ୍ଡା—ଦେଖ ସାନବାବୁ, ତୁମ ଚାଲିଚଳଣକୁ ଲୋକେ ଖୁଣିବାକୁ ଆରମ୍ଭ କଲେଣି । ଏମିତି ବାଜେ ଲୋକଙ୍କ ପାଇଁ କାହିଁକି ମାତିଛ ଭଲା ?

ପ୍ରଭୁ—କେଉଁମାନେ ବାଜେ ଲୋକ ? ଏହି ଭକ୍ତମାନେ ? ଆଉ ତମେସବୁ ଧାର୍ମିକ ? ଧର୍ମର ଧ୍ୱଜା ଧରିଛ ?

ପଣ୍ଡା—ମୁଁ ତୁମ ସାଙ୍ଗରେ ଯୁକ୍ତି କରିପାରିବ ନାହିଁ । କେଉଁଟା ଭଲ ଏବଂ କେଉଁଟା ଭୁଲ୍ ମୁକ୍ତିମଣ୍ଡପ ଠିକ୍ କରିବ । ଆମେ ସେମାନଙ୍କ

ନର୍ତ୍ତକରେ ଚଳିବା ଲୋକ । ଅଦା ବେପାରୀର ଜାହାଜ ମୂଲ କରି ଲାଭ କଣ ?

ପ୍ରଭୁ—ମୁକ୍ତି ମଣ୍ଡପ, ମୁକ୍ତି ମଣ୍ଡପ ! ସବୁବେଳେ ଖାଲି ସେଇ ଗୋଟିଏ କଥା । ସତେ ଯେମିତି ଭଗବାନ ତାକୁ ସୃଷ୍ଟି କରିଛନ୍ତି । ଗଜପତିମାନେ ନିଜ ପ୍ରତିଷ୍ଠା ରକ୍ଷାକରିବା ପାଇଁ ସୃଷ୍ଟି କରିଥିଲେ ମୁକ୍ତି ମଣ୍ଡପ ଏବଂ ତାର ଅପକର୍ମ ଯୋଗୁ ଆମର ଦୁର୍ଗତି ଘଟିଛି । ଭକ୍ତ କଳାଗୃନ୍ଦ ଦୁର୍ଦ୍ଧର୍ଷ କଳାପାହାଡ଼ ପାଲଟିଛି । ପ୍ରଭୁଙ୍କର ଶ୍ରେଷ୍ଠ ଭକ୍ତ ଯବନ କୁଳୋଦ୍ଭବ ସାଲବେଗ ମନ୍ଦିର ବେଢ଼ା ଭିତରକୁ ପଶିବାକୁ ଅନୁମତି ପାଇନାହାନ୍ତି ଏବଂ ଶେଷରେ ଗଜପତି ଦ୍ୱିତୀୟ ରାମଚନ୍ଦ୍ର ଦେବ ଯବନୀ କନ୍ୟାର ପାଣିଗ୍ରହଣ ଯୋଗୁ ଜଗନ୍ନାଥ ଦର୍ଶନର ସୁଯୋଗରୁ ବଞ୍ଚିତ ହୋଇଛନ୍ତି ।

—ଦୃଶ୍ୟାନ୍ତର—

[ ଦୃଶ୍ୟାନ୍ତର । ଅରୁଣସ୍ତମ୍ଭ ଦେଖାଗଲା । ଯୋଦ୍ଧା ବେଶରେ ଜଣେ ଯୁବକ ଦଣ୍ଡାୟମାନ । ଗୋଟିଏ କରୁଣ ସଙ୍ଗୀତର ମୂର୍ଚ୍ଛନାରେ ଗୃହଦେଶ ଉଚ୍ଛୁଳି ପଡ଼ୁଛି । ]

ଯୁବକ—ମୁଁ ଯୁଦ୍ଧ କରିବାକୁ ଆସିନାହିଁ ସେବକ । ମୁଁ ଆସିଛି ପ୍ରଭୁ ଚକାଡୋଳାଙ୍କୁ ପ୍ରଣତି ଜଣାଇବା ପାଇଁ ।

ସେବକ—କିଏ ତୁମେ ? ଏ ବେଶରେ ଶ୍ରୀମନ୍ଦିରରେ ପ୍ରବେଶ କରିବାକୁ ଚାହୁଁଛ କାହିଁକି ?

ଯୁବକ—ମୁଁ କଳାଗୃନ୍ଦ—ମୁଁ ଏକ ଭ୍ରଷ୍ଟ ଯୁବକ । ମାତାଙ୍କ ଆଦେଶ ପାଳନ କରିବାକୁ ଏଠାକୁ ଆସିଛି । ମୋତେ ତୁମେ ପ୍ରଭୁଙ୍କର ଚରଣ ସ୍ପର୍ଶ କରିବାକୁ ଦେବ ସେବକ ?

ସେବକ—ହଜାର ହଜାର ଯାତ୍ରୀ ମନ୍ଦିର ଭିତରକୁ ଅବାଧରେ ଯାଉଛନ୍ତି —ତୁମେ ଉଚ୍ଚ ବଂଶରେ ଜାତ ହୋଇଛ ବୋଲି ଜଣାପଡ଼ୁଛି । ମୋର ଅନୁମତି ମାଗୁଛ କାହିଁକି ?

ଯୁବକ—ସେ ଏକ ବିରାଟ ପ୍ରଶ୍ନ ! ମାତାଙ୍କ ଆଦେଶ, ମୋର ପରିଚୟ ଦେଇ ପ୍ରଭୁଙ୍କର ଚରଣ ସ୍ପର୍ଶ କରିବା ପରେ ଯାଇ ତାଙ୍କ ଚରଣ ସ୍ପର୍ଶ କରିବାର ଅନୁମତି ପାଇବି । ମୋର ଜନ୍ମ ବ୍ରାହ୍ମଣ କୁଳରେ । କିନ୍ତୁ—

ସେବକ—ଆଉ କିନ୍ତୁ କ'ଣ ? ଯା'ର ବ୍ରାହ୍ମଣ କୁଳରେ ଜନ୍ମ ତାର କେବଳ ମନ୍ଦିର ପ୍ରବେଶର ଅଧିକାର ନାହିଁ, ସେ ତ ବିନା ଦ୍ୱିଧାରେ ପ୍ରଭୁଙ୍କର ଚରଣ ସ୍ପର୍ଶ କରିପାରିବ । ତୁମେ ଏମିତି ସଙ୍କୋଚ କରୁଛ କାହିଁକି ?

ଯୁବକ—ମୁଁ ଭ୍ରଷ୍ଟ । ମୁଁ ବ୍ରାହ୍ମଣ କୁଳରେ ଜନ୍ମ ହେଲେ ମଧ୍ୟ ଯବନ କନ୍ୟାର ପାଣିଗ୍ରହଣ କରିଛି । ମୋର ସଂସ୍କାର ଦରକାର ।

ସେବକ—( ପଛକୁ ଘୁଞ୍ଚିଯାଇ ) ନା ନା, ତାହା ମୋ ଦେଇ ହୋଇ ପାରିବ ନାହିଁ । ଯେ ମୁସଲମାନ ସ୍ତ୍ରୀ ବିବାହ କରିଛି, ସେ ମନ୍ଦିରକୁ ପ୍ରବେଶ କରିପାରିବ ନାହିଁ । ( ଜୋର୍‌ରେ ପାଟିକରି ) ହେ ଭାଇ ରାମ, ଯଦୁ, ବଳଭଦ୍ର—ସମସ୍ତେ ଦଉଡ଼ି ଆସରେ । ମୋତେ ଏ ପଠାଣ ମାରି ଦେବରେ ।

ଯୁବକ—ନା' ନା' ସେବକ, ମୁଁ କାହାର ଉପରେ ଆକ୍ରମଣ କରିବାକୁ ଆସିନାହିଁ । ( ସେତେବେଳେ ଦଳେ ପଣ୍ଡା ପଡ଼ିଆରେ ଜମି ଯାଇଥିଲେ । ) ମୁଁ କେବଳ ଅନୁରୋଧ କରୁଛି—

ପ୍ରଥମ ପଣ୍ଡା—କ'ଣ ଅନୁରୋଧ କରୁଛୁଟିରେ ଯ୍ଲେଚ୍ଛ ? ଯା', ସିଧାବାଟ ପଡ଼ିଛି । ପଳା ଏଇଠୁ ।

ଯୁବକ—ଏମିତି କହନାହିଁ ଭାଇ । ଯା'ର ଶରୀର ଅପବିତ୍ର ହୋଇଛି, ତାହା ସେ ପୁଣି ଥରେ ପବିତ୍ର କରିଦେଇ ପାରେ । ମୋର ଆତ୍ମା ତ ଅପବିତ୍ର ହୋଇନାହିଁ ।

ଦ୍ୱିତୀୟ ପଣ୍ଡା—କେବଳ ତୋର ଆତ୍ମା ନୁହେଁ, ତୋର ଚଉଦ ପୁରୁଷର ଆତ୍ମା ଅପବିତ୍ର ହୋଇଯାଇଛି । ତୁ ଆସିଚୁ ଡରେଇ ଧମକେଇ ମନ୍ଦିର ପ୍ରବେଶ କରିବାକୁ ?

ଯୁବକ—ଡରେଇ ଧମକେଇ ମନ୍ଦିର ଲୁଣ୍ଠନ କରାଯାଏ, ମନ୍ଦିର ଓ ମନ୍ଦିରର ପଣ୍ଡା ପଡ଼ିଆରୀଙ୍କ ଉପରେ ଅତ୍ୟାଚାର କରାଯାଏ । ମୁଁ ତ ତାହା କରିବାକୁ ଆସିନାହିଁ ।

( ସେତେବେଳେ ବାହାରେ ସାମାନ୍ୟ କୋଳାହଳ ଶୁଣାଗଲା । ତୂରୀ ବାଜିଲା । ଶୁଣାଗଲା—ବୀର ଶ୍ରୀ ଗୌଡ଼େଶ୍ୱର ନବକୋଟି କର୍ଣ୍ଣାଟ କଳେବର୍ଗେଶ୍ୱର ବୀରବର ଶ୍ରୀ ଶ୍ରୀ ଶ୍ରୀ ମୁକୁନ୍ଦଦେବ ବିଜେ କରୁଛନ୍ତି । )

ସେବକ—ଆରେ ମ୍ଳେଚ୍ଛ, ତୁ ପଳା ଏଇଠୁ । ଗଜପତିଙ୍କ ଆସିବା ବେଳ ହେଲାଣି ।

ଯୁବକ—ମୁଁ କାହିଁକି ଯିବି ? ସେ ତୁମର ଯେମିତି ଗଜପତି, ସେ ମୋର ମଧ୍ୟ ଗଜପତି । ମୁଁ ତାଙ୍କୁ ମୋର ଅନୁରୋଧ ଜଣାଇବି ।

( ଏହି ସମୟରେ ପାତ୍ର ମନ୍ତ୍ରୀଙ୍କ ସହିତ ପ୍ରବେଶ କଲେ ମୁକୁନ୍ଦଦେବ । )

ମୁକୁନ୍ଦଦେବ—ଏଇଠି ଗୋଳମାଳ କାହିଁକି ?

ସେବକ—ଏ ଯୁବକ ମୁସଲମାନ ସ୍ତ୍ରୀକୁ ବିବାହ କରି ଭ୍ରଷ୍ଟ ହୋଇସାରିବା ପରେ ମନ୍ଦିରକୁ ପ୍ରବେଶ କରିବାକୁ ଆସିଛି ମହାରାଜ ।

ମୁକୁନ୍ଦଦେବ—( ଯୁବକକୁ ପ୍ରଶ୍ନ କଲେ )—ଏ କଣ ସତ୍ୟ ଯୁବକ ?

ଯୁବକ—ହଁ ମହାରାଜ ।

ମୁକୁନ୍ଦଦେବ—ତାହାହେଲେ ଶ୍ରୀ ମନ୍ଦିରକୁ ପ୍ରବେଶ କରିବାର ଦୁଃସାହସ ହେଉଛି କପରି ? ତୁମ ପାଇଁ ଶ୍ରୀ ମନ୍ଦିରର ଦ୍ୱାର ସବୁଦିନ ପାଇଁ ବନ୍ଦ ।

ଯୁବକ—ଆପଣ ମୋର ଅନ୍ତରାତ୍ମାର ବିଳାପ ଶୁଣିପାରୁଛନ୍ତି ମହାରାଜ ! ପ୍ରଭୁ ଜଗନ୍ନାଥଙ୍କ ଚରଣ ସ୍ପର୍ଶ କରିବାର ମୋର ହୃଦୟର କୋମଳ ବାସନାକୁ ଆପଣ ପଦଦଳିତ କରନ୍ତୁ ନାହିଁ ମହାରାଜ । ଜଗନ୍ନାଥଙ୍କର ଚଳନ୍ତି ପ୍ରତିମା ଆପଣ । ମୋର ଆତ୍ମା ଆଜି ବି ପବିତ୍ର । ମୋତେ ଆପଣ ଅନୁଗ୍ରହୀତ କରନ୍ତୁ ମହାରାଜ । ଏହି

ପତିତକୁ ଉଦ୍ଧାର କର ପତିତମାନଙ୍କର ପ୍ରଭୁ, ପତିତପାବନଙ୍କ ଚଳନ୍ତି ପ୍ରତିମାର ନାମ ସାର୍ଥକ କରନ୍ତୁ ମହାରାଜ ।

ମୁକୁନ୍ଦ—ଜଣେ ବିଧର୍ମୀର ଏତେ ଆସ୍ପର୍ଦ୍ଧା !

ଯୁବକ—ଆସ୍ପର୍ଦ୍ଧା ନୁହେଁ ମହାରାଜ ! ଏହା ଗୋଟିଏ ଅନୁତପ୍ତ ହୃଦୟର ଅନୁନୟ ନିବେଦନ ମାତ୍ର ।

ମୁକୁନ୍ଦ—ଏହାକୁ ତଞ୍ଚଳ ମୋ ସାମନାରୁ ବହିଷ୍କାର କର ।

(ସୈନ୍ୟମାନେ ଆସି ଜୋର ଜବରଦସ୍ତ କଳାପାହାଡ଼କୁ ଠେଲିବାକୁ ଲାଗିଲେ । କଳାପାହାଡ଼ ପ୍ରତିରୋଧ କଲା । ଏହି ପ୍ରକ୍ରିୟାରେ କଳାପାହାଡ଼ ଭୂପତିତ ହେଲା । ସତେ ଯେମିତି ତା'ର ଭାବାନ୍ତର ହେଲା । ଅନୁନୟ ବିନୟ ପରିବର୍ତ୍ତେ ବୀର ଦର୍ପରେ ଦଣ୍ଡାୟମାନ ହେଲା କଳାପାହାଡ଼ । )

ଯୁବକ—ଆପଣ ମୋତେ କେବଳ ଅପମାନିତ କରୁନାହାନ୍ତି । ଆପଣଙ୍କ ପତିତପାବନ ପ୍ରଭୁ ଜଗନ୍ନାଥଙ୍କୁ ଅପମାନ ଦେଉଛନ୍ତି । ଆପଣଙ୍କ ଧର୍ମ ସନାତନ ଧର୍ମର ଆପଣ ପୃଷ୍ଠପୋଷକତା କରୁନାହାନ୍ତି, ତା'ର ମୂଳଦୁଆ ଉପରେ ଆପଣ କୁଠାରଘାତ କରୁଛନ୍ତି । ମୋ ଭଳି ଶତ ଶତ ଆଗ୍ରହୀ କକ୍ଷଚ୍ୟୁତ ଗ୍ରହଙ୍କୁ ସ୍ନେହ ଓ ସହାନୁଭୂତିର ସହିତ ନିଜ ବାହୁ ପାଶରେ ବାନ୍ଧି ନ କରି ପ୍ରତିଯୋଗୀ ପ୍ରୀଣୀତ କରୁଛନ୍ତି ।

ମୁକୁନ୍ଦ—ଭାଷଣ ବନ୍ଦକର ଅର୍ବାଚୀନ । ହିନ୍ଦୁ ଧର୍ମ ଏକ ମହାନ୍ ଧର୍ମ । ଯେ ଥରେ ଭ୍ରଷ୍ଟ ହୋଇଛି ସେ କେବେ ସେ ଧର୍ମକୁ ଫେରି ପାରିବ ନାହିଁ ।

ଯୁବକ—ଯେଉଁ ଧର୍ମର ଭାଗ୍ୟଡୋରି ଆପଣ ଧରିଛନ୍ତି, ମୁଁ ତାକୁ ଘୃଣା କରେ । ଆଉ ଶୁଣି ରଖନ୍ତୁ ଗଜପତି ମୁକୁନ୍ଦ ଦେବ ! ଆପଣଙ୍କ ଠାକୁରର ଶପଥ ନେଇ ମୁଁ ପ୍ରତିଜ୍ଞା କରୁଛି ମୁଁ ଏ ଅପମାନର ପ୍ରତିଶୋଧ ନେବି । ମୋ ଭାଷଣ ଆପଣଙ୍କୁ ଭଲ ଲାଗିଲା ନାହିଁ ତ ! ମୋର ରଣ କୌଶଳ ଆପଣଙ୍କୁ ନିଶ୍ଚିତ ଭାବରେ ଭଲ ଲାଗିବ ।

ଯେଉଁ ଦାରୁବ୍ରହ୍ମ ଧାଙ୍ଗ ବଡ଼ ଠାକୁରକୁ ଆପଣ ଗୋଟିଏ କାଠର ପିଲ୍ଲା ଭଳି ଅପମାନିତ କରୁଛନ୍ତି ତାକୁ ମୁଁ ଜଳପୋଡ଼ି ପାଉଁଶ କରିଦେବି । ମନେରଖନ୍ତୁ—ମୋର ନାମ କଳାପାହାଡ଼—ମୁଁ ବଙ୍ଗର ନବାବ ସୁଲେମାନଙ୍କ ସୁଦକ୍ଷ ସେନାପତି ।

( ଝଡ଼ ବେଗରେ କଳାପାହାଡ଼ ପ୍ରସ୍ଥାନ କଲା । ତତ୍-କ୍ଷଣାତ୍ ଆଲୁଅ ଲିଭିଗଲା । ତା'ପରେ ମଞ୍ଚ ଆଲୋକିତ ହେଲାବେଳେ ଦେଖାଦେଲା ସିଂହଦ୍ୱାର ସମ୍ମୁଖରେ ଯୁଦ୍ଧର ତାଣ୍ଡବ ଲୀଳା । ଶୁଣାଗଲା ଚିତ୍କାର—କୁକୁଘଣ୍ଟା ଚିତ୍କାର । ମଞ୍ଚର ମଧ୍ୟଭାଗରେ ଅଟ୍ଟହାସ୍ୟ କରି କଳାପାହାଡ଼ ଦଣ୍ଡାୟମାନ । )

କଳାପାହାଡ଼—ଭାଙ୍ଗିଦିଅ ସବୁ ମନ୍ଦିରକୁ । ମନ୍ଦିରର ଚଉତରା ଉପରେ ତୋଳି ଯାଅ ଗୋଟିଏ ପରେ ଗୋଟିଏ ମସ୍‌ଜିଦ୍ । ମୋତେ ମ୍ଳେଛ କହି ଯେ ଅପମାନିତ କରିଛି ସେହି କାଫେର୍‌କୁ ଉଚିତ୍ ଶିକ୍ଷାଦିଅ । ମୁକୁନ୍ଦଦେବର ରାଣୀକୁ ଟାଣି ଆଣ ମୋର ହେରେମ୍‌କୁ ଆଉ ସମୁଦ୍ରକୂଳରେ ପୋଡ଼ି ଦିଅ ମୁକୁନ୍ଦଦେବର ସେହି ଜଗନ୍ନାଥ ମୂର୍ତ୍ତିକୁ ।

( ତା'ପରେ ଅନ୍ଧକାର । କୁକୁରର କ୍ରନ୍ଦନ ଶୁଣାଗଲା । ଆଉ ଯେତେ କିଛି ଅଶୁଭ ସୂଚନା ସେ ସବୁ ପ୍ରକଟିତ ହେଲା । ରଙ୍ଗମଞ୍ଚର ଗୋଟିଏ କଣରେ ନିଆଁ ହୁ ହୁ ହୋଇ ଜଳୁଥିବାର ଦେଖାଗଲା । ସେତେବେଳେ ପ୍ରଭୁ ଦତ୍ତର କଣ୍ଠସ୍ୱରରେ ଶୁଣାଗଲା :

"ତଥାପି ଆମେ କିଛି ଶିଖିଲୁ ନାହିଁ । ଅର୍ଦ୍ଧ ଶତାବ୍ଦୀ ପରେ ପୁଣି ଦେଖାଦେଲା ବଡ଼ପଣ୍ଡାମାନଙ୍କ ଦୌରାତ୍ମ୍ୟ ।"

ଏହି ଉକ୍ତି ସରୁ ସରୁ ମଞ୍ଚ ଧୀରେ ଧୀରେ ଆଲୋକିତ ହେବାକୁ ଲାଗିଲା । ଅରୁଣସ୍ତମ୍ଭ ନିକଟରେ ସାଲବେଗ ଦୃଶ୍ୟମାନ ହେଲେ । ଦେଖାଗଲା ପଣ୍ଡାଠୁ ଧକ୍କା

ଖାଇ ସାଲବେଗ ତଳେ ପଡ଼ିଗଲେ । ତାଙ୍କୁ ଉଠୁ ଉଠୁ
ତାଙ୍କ କଣ୍ଠରୁ ସ୍ୱର ପଡ଼ୁଥିଲା ଅମୃତ । ]

ସାଲବେଗ—ଆହେ ନୀଳାଚଳବାସୀ
ଶୋକ ଜଳଧିରେ ଗଲି ଭାସି ।
ଧଇର୍ଯ୍ୟରେ ମେରୁ ନାମ କଳ୍ପତରୁ
ଗୁହ୍ୟାଶୀଳ ହେଲା ସିନା ।
ଅରୁଣ ଚରଣ ଆଶ୍ରେ କଲି ଠାରେ
ବୁଡ଼ିଲା ମୋର ଚେତନା ।
ମୁଁ ଅବା ଅପ୍ରାଧୀ ହେ କୃପାବାରିଧି
ଥରେ ନୋହିଲା କରୁଣା,
କହେ ସାଲବେଗ ପ୍ରଭୁ ପଦାକୁ ଏ
ଭାଷିବ ବହୁତ ଗୁଣା ।

( ଏହି ସମୟରେ ଭିତରୁ ଶୁଣାଗଲା : ବୀର ଶ୍ରୀ ଗୌଡ଼େଶ୍ୱର ନବକୋଟି କର୍ଣ୍ଣାଟ କଳବର୍ଗେଶ୍ୱର ବୀରବର ଶ୍ରୀ ଶ୍ରୀ ଶ୍ରୀ ନରସିଂହ ଦେବ ବିଜେ କରୁଛନ୍ତି । )

ପଣ୍ଡା—(ହାତ ଉଠାଇ)—ଯାବେ ମ୍ଳେଚ୍ଛ, ଏଇଠୁ ପଳା ଚଞ୍ଚଳ । ମହାରାଜା ନ ହେଲେ ତୋତେ ଶୂଳୀରେ ଚଢ଼େଇ ଦେବେ ।

( ନରସିଂହଦେବ, ସେନାପତି, ମହାମନ୍ତ୍ରୀ ପ୍ରଭୃତି ପ୍ରବେଶ କଲେ । )

ନରସିଂହ—ଏ କ'ଣ କରୁଛ ସେବକ ? ଜଣେ ଭକ୍ତକୁ ତୁମେ ଏପରି ତିରସ୍କାର କରୁଛ କାହିଁକି ?

ପଣ୍ଡା—ଏ ଭକ୍ତ ନୁହେଁ ମହାରାଜ ! ଏ ଜଣେ ବ୍ୟାଧିଗ୍ରସ୍ତ ମୁସଲମାନ । ଏହାର ଛାଇ ପଡ଼ିଲେ ବି ଏ ମାଟି ଅପବିତ୍ର ହୋଇଯିବ ।

ନରସିଂହ—ସ୍ଳେଚ୍ଛ ମୁହଁରେ ବଡ଼ କଥା ସୁନ୍ଦର ଦିଶେନାହିଁ ସେବକ ପ୍ରଭୁ ଜଗନ୍ନାଥଙ୍କ ପରମ ଭକ୍ତ ସାଲବେଗଙ୍କୁ ଏପରି କହିବାକୁ

ଲଜ୍ଜ୍ୟା ଲାଗୁନି ତୁମକୁ ?

( ପଣ୍ଡା ଅପସରିଗଲେ । ସାଲବେଗଙ୍କୁ ଲକ୍ଷ୍ୟକରି ପୁଣି ମହାରାଜା କହିଲେ— )

ମୋତେ କ୍ଷମା କରନ୍ତୁ ଭକ୍ତପ୍ରବର । ସେବକ ଅଜାଣତରେ ଆପଣଙ୍କୁ ଅପମାନିତ କରିଛି—ମୁଁ ତା ତରଫରୁ କ୍ଷମାଭିକ୍ଷା କରୁଛି ।

ସାଲବେଗ—ଏ କଣ କହୁଛନ୍ତି ମହାରାଜ ! ଆପଣ ସ୍ୱୟଂ ଜଗନ୍ନାଥଙ୍କ ଚଳନ୍ତି ପ୍ରତିମା । ଆପଣଙ୍କୁ ଦର୍ଶନ କରି ମୁଁ କୃତାର୍ଥ ହୋଇଛି ମହାରାଜ । ମୋତେ କ୍ଷମା ଭିକ୍ଷାକରି ଆପଣ ମୋତେ ଅପରାଧୀ କରନ୍ତୁ ନାହିଁ ମହାରାଜ ।

ନରସିଂହ—ଦେଖୁଛନ୍ତି ମହାମନ୍ତ୍ରୀ, ଦେଖୁଛନ୍ତି ସେନାପତି ଆପଣେ । ଭକ୍ତ-ପ୍ରବର ସାଲବେଗଙ୍କ ହୃଦୟର ସାନ୍ଦ୍ରତା ଅନୁଭବ କରିପାରୁଛନ୍ତି ? ଜଗନ୍ନାଥଙ୍କ ଚଳନ୍ତି ପ୍ରତିମା ହୋଇ ତାଙ୍କ ଶ୍ରେଷ୍ଠ ଭକ୍ତଙ୍କୁ ମୁଁ ମନ୍ଦିର ବେଢ଼ାକୁ ପ୍ରବେଶ କରିବାକୁ ଅଧିକାର ଦେଇ ପାରୁନାହିଁ । ଏ ବିଧିର ବିଡ଼ମ୍ବନା ନୁହେଁ ତ ଆଉ କଣ ?

ସେନାପତି—ଏପରି ପାପିଷ୍ଠମାନଙ୍କୁ ସମୂଳେ ଉତ୍ପାଟନ କରିବା ଦରକାର ମହାରାଜ । ଭଜନ କୀର୍ତ୍ତନ କରି ଆପଣଙ୍କ ତଥା ଅନେକ ନଗର ନାଗରିକଙ୍କ ମନ ମୋହିଦେଇ ଏହି ଭଣ୍ଡ ଭକ୍ତ ଆମ ସମାଜକୁ କଳଙ୍କିତ କରିଦେଉଛି ମହାରାଜ ।

ନରସିଂହ—ନା ନା ସେନାପତି ! ସେମିତି କହି ଭକ୍ତଶ୍ରେଷ୍ଠଙ୍କୁ ଅପମାନିତ କରିବା ସଙ୍ଗେ ସଙ୍ଗେ ତୁମେ ସ୍ୱୟଂ ଜଗନ୍ନାଥଙ୍କୁ ଅପମାନିତ କରୁଛ ।

ସେନାପତି—ମୋର ଧୃଷ୍ଟତା ମାର୍ଜନା କରନ୍ତୁ ମହାରାଜ ! ଏ ପଠାଣ ଗୁଣି କରି ଆପଣଙ୍କୁ ମୋହି ଦେଇଛି । ଯାହାକୁ ଅବିଳମ୍ବେ ଶେଷ କରିବାକୁ ହେବ ।

( ତରବାରି ଉପରେ ହାତ ଦେଲେ । )

ନରସିଂହ—ଶାନ୍ତ ହୁଅ ସେନାପତି । ମୋ ରାଜ୍ୟରେ ଭକ୍ତ ଉପରେ ଉତ୍ପୀଡ଼ନ ହେଉଛି ଏକ ଅକ୍ଷମଣୀୟ ଅପରାଧ । ତୁମେ ତୁରନ୍ତ ବଳଗଣ୍ଡିରେ ଭକ୍ତ ପ୍ରବରଙ୍କ ପାଇଁ ଉଦ୍ଦିଷ୍ଟ ସ୍ଥାନରେ ଛଣମଠ କରିବାର ସମସ୍ତ ଆୟୋଜନ କର । ଯୁଗେ ଯୁଗେ ସେହି ସ୍ଥାନ ପରମ ତୀର୍ଥସ୍ଥାନ ରୂପେ ଅମର ରହୁ ।

ସାଲବେଗ—ମହାରାଜାଙ୍କ ଅପାର କରୁଣା ମୋତେ ଅଭିଭୂତ କରିଛି । ମୋ ପାଇଁ ଆପଣଙ୍କ ଏହି ଦାନ ଆପଣଙ୍କ ନାମ ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ କରି ରଖିବ । କିଏ କହେ ଭଗବାନ କରୁଣାହୀନ ? ହେ ପ୍ରଭୁ ତୁମକୁ ଛାଡ଼ି ମୁଁ ରହିପାରିବନି ପ୍ରଭୁ ।

( ତାପରେ ଗାଇ ଉଠିଲେ— )

ପଦ ଛାଡ଼ିବୁ ନାହିଁ,

ଛାଡ଼ିଲେ ଶ୍ରୀକୃଷ୍ଣ ନାମ ଆଉ ପାଇବୁ ନାହିଁ ?

ପୋଖରୀର ତୀରପାଖେ ଲଗାଇଲି ଚମ୍ପା,
ଡାଳ ଭାଙ୍ଗି ପୁଷ୍ପ ତୋଳେ ଚତୁରୀ ରାଧିକା ।
ଏକ ହସ୍ତେ ପାନବଟା ଆନ ହସ୍ତେ ଝରୀ,
ଧୀରେ ଧୀରେ ପାଦ ଚଳେ ରାଧିକା ସୁନ୍ଦରୀ ।

ପଦ ଛାଡ଼ିବୁ ନାହିଁ ···

ପିତା ତ ମୋଗଲ ବେଟା ମାତା ଯେ ବ୍ରାହ୍ମଣୀ,
ହୀନକୁଳେ ଜନ୍ମ ହେଲି ହିନ୍ଦୁ ନଖାଏ ପାଣି ।
ପିତା ଦେଲେ ଜୀବଦାନ ମାତା ଦେଲେ କ୍ଷୀର,
କହେ ସାଲବେଗ ମୀନ ଜାତିରେ ଫକୀର ।

ପାଦ ଛାଡ଼ିବୁ ନାହିଁ ···

ନରସିଂହ—କି ଅମୃତମୟ ସଙ୍ଗୀତ । ମୋର ଦୁର୍ଭାଗ୍ୟ ଯେ ମୁଁ ଏପରି ମହତ ପୁରୁଷଙ୍କୁ ସମୁଚିତ ସମ୍ମାନ ପ୍ରଦର୍ଶନ କରିପାରୁ ନାହିଁ ।

[ ମଞ୍ଚ ଅନ୍ଧକାର ହୋଇଗଲା । ପ୍ରଭୁଦତ୍ତର ସ୍ୱରରେ ଶୁଣାଗଲା : "ବୀରବର ଗଜପତି ପ୍ରଥମ ନରସିଂହ ଦେବଙ୍କ ସମ୍ମତି ସତ୍ତ୍ୱେ ସାଲବେଗଙ୍କୁ ମୁକ୍ତିମଣ୍ଡପ ମନ୍ଦିର

ପ୍ରବେଶର ଅଧିକାର ଦେଇନଥିଲେ । ତାଙ୍କପରେ ଦାସିଆ ବାଉରୀ ଏବଂ ଅନେକ ହୀନକୁଳସମ୍ଭୂତ ଭକ୍ତଙ୍କୁ ମୁକ୍ତିମଣ୍ଡପ ମନ୍ଦିର ପ୍ରବେଶ କରିବାରୁ ବଞ୍ଚିତ କଲେ ଏବଂ ଶେଷରେ ଯେଉଁ ଗଜପତିମାନେ ମୁକ୍ତିମଣ୍ଡପର ସ୍ରଷ୍ଟା ସେମାନଙ୍କ ମଧ୍ୟରୁ ଜଣେ ରାମଚନ୍ଦ୍ର ଦେବ ଦ୍ୱିତୀୟଙ୍କୁ ମଧ୍ୟ ମନ୍ଦିର ପ୍ରବେଶର ଅଧିକାର ଦିଆଯାଇ ନଥିଲା ।"

ତାପରେ ମଞ୍ଚ ଆଲୋକିତ ହେଲା ବେଳକୁ ପତିତ-ପାବନଙ୍କ ମୂର୍ତ୍ତି ଦୃଶ୍ୟମାନ ହେଲା ଏବଂ ନିଜର ଯବନୀ ସ୍ତ୍ରୀଙ୍କ ସହିତ ରାମଚନ୍ଦ୍ର ଦେବ ଦ୍ୱିତୀୟ ଭକ୍ତିଭରେ ସେହି ପତିତପାବନଙ୍କୁ ଅରୁଣସ୍ତମ୍ଭ ନିକଟରୁ ପ୍ରଣାମ କରୁଥିଲେ । ]

ରାମଚନ୍ଦ୍ର—ଦେଖ ଭଦ୍ରେ, ପତିତପାବନଙ୍କ ଅପୂର୍ବ ରୂପ ଦର୍ଶନ କର । ପ୍ରଭୁ ଚକାଡୋଳାଙ୍କ ମୁଁ ହେଉଛି ଚରଣ ସେବକ । ଆଜି ରତ୍ନ-ସିଂହାସନରେ ଆରୂଢ଼ ପ୍ରଭୁଙ୍କୁ ଦେଖିବାର ସୌଭାଗ୍ୟ ମୁଁ ହରେଇ ବସିଛି ସିନା, ପତିତପାବନଙ୍କୁ ଦେଖି ମୋର ନୟନ ମନ ସାର୍ଥକ ହୋଇଛି ।

ସୁରୈୟା—କି ସୌଭାଗ୍ୟ ମୋର । ରାଜପ୍ରାସାଦ ହରେଇ ମୋର ମନରେ ଦୁଃଖ ନାହିଁ—ପତିତପାବନଙ୍କ ଦର୍ଶନରେ ମୁଁ ଅଭିଭୂତ ହୋଇ ପଡୁଛି । ରତ୍ନ ସିଂହାସନରେ ଆରୂଢ଼ ପ୍ରଭୁ ଚକାଡୋଳାଙ୍କୁ ଦେଖିବାକୁ ମନ ମୋର ଛଟପଟ ହେଉଛି ମହାରାଜ ।

ରାମଚନ୍ଦ୍ର—କି ଅଦ୍ଭୁତ ଯୁକ୍ତି ମୁକ୍ତିମଣ୍ଡପର । ତୁମେ ମହାରାଣୀ ସୂର୍ଯ୍ୟମଣି ଦେବୀ—ସ୍ୱୟଂ ଗଜପତିଙ୍କ ବିବାହିତା ସ୍ତ୍ରୀ । ତମେ ତ ଆଉ ଯବନୀ କନ୍ୟା ସୁରୈୟା ହୋଇ ରହିନାହଁ । କିନ୍ତୁ ସେମାନଙ୍କ ଯୁକ୍ତି ଯେ ତୁମେ ଯବନୀ କନ୍ୟା ବୋଲି ମନ୍ଦିର ପ୍ରବେଶ କରିବାର ଅଧିକାର ନାହିଁ ତୁମର ।

( ସେତେବେଳେ ରାଜଗୁରୁଙ୍କ ପ୍ରବେଶ । )

ରାଜଗୁରୁ—ମହାରାଜାଙ୍କର ଜୟ ହେଉ । ଆଜ ବ୍ରାହ୍ମଣ-କ୍ଷତ୍ରୀୟ-ବୈଶ୍ୟ-ଶୂଦ୍ର ସମସ୍ତେ ଉତ୍ତେଜିତ ହୋଇ ପଡ଼ିଛନ୍ତି ମହାରାଜ । ଆପଣ ନୂତନ ମହାରାଣୀଙ୍କୁ ପରିତ୍ୟାଗ ନ କଲେ ଆପଣଙ୍କୁ ଗଜପତି ବୋଲି ସ୍ୱୀକାର କରିବାକୁ ସେମାନେ ପ୍ରସ୍ତୁତ ନୁହନ୍ତି ମହାରାଜ ।

ରାମଚନ୍ଦ୍ର—ଏ କଥା ଆପଣ କହିପାରୁଛନ୍ତି ରାଜଗୁରୁ ମହାଶୟ ? ମହାରାଜା ଦଶରଥ କଣ ଯବନୀ କନ୍ୟା କୈକେୟୀଙ୍କୁ ବିବାହ କରି ନିଜର ସିଂହାସନର ମର୍ଯ୍ୟାଦା ରକ୍ଷାକରି ନଥିଲେ ? ମୁଁ ଯବନୀ କନ୍ୟାର ପାଣିଗ୍ରହଣ କରିଥିଲେ ମଧ୍ୟ ନବାବ ଆଲିବର୍ଦ୍ଦି ଖାଁର ପୁତୁରା ଓଡ଼ିଶାର ସୁବାଦାର ସୟଦ ଅହମ୍ମଦ ଖାଁର ଅତ୍ୟାଚାର ଆଉ ଲୋଲୁପ ଦୃଷ୍ଟିରୁ ଓଡ଼ିଆ ସ୍ତ୍ରୀ ଜାତିକୁ ରକ୍ଷା କରିବା ମାନସରେ ବାରବାଟୀ ଆକ୍ରମଣ କରି ତାକୁ ପରାସ୍ତ କରିନାହିଁ । ସନାତନ ଧର୍ମର ଟେକ ରଖିବା ପାଇଁ ମୋର ଜୀବନକୁ ମୁଁ ବିପନ୍ନ କରିନାହିଁ ? ଯବନୀ କନ୍ୟା ବିବାହ ପରେ ମୋର କାର୍ଯ୍ୟ-କଳାପରେ, ରାଜକାର୍ଯ୍ୟ ପରିଚାଳନାରେ କିଛି ପାର୍ଥକ୍ୟ ଦେଖୁଛନ୍ତି ଆପଣ ? ଋଷିଶ୍ରେଷ୍ଠ ବଶିଷ୍ଠ ଚଣ୍ଡାଳ କନ୍ୟା ଅରୁନ୍ଧତୀଙ୍କୁ ବିବାହ କରି ନିଜର ଜାତି ତ ହରାଇ ନଥିଲେ ? ମୁଁ ଜଣେ ଧର୍ମପ୍ରାଣା ଜଗନ୍ନାଥଙ୍କ ସେବିକା ଯବନୀ ସ୍ତ୍ରୀର ପାଣିଗ୍ରହଣ କରି ଧର୍ମଚ୍ୟୁତ ହେବି କାହିଁକି ?

ରାଜଗୁରୁ—ମୋର ଧୃଷ୍ଟତା ମାର୍ଜନା କରନ୍ତୁ ମହାରାଜ । ପ୍ରଜାମାନଙ୍କ ମଙ୍ଗଳ ପାଇଁ ସ୍ୱୟଂ ପ୍ରଭୁ ରାମଚନ୍ଦ୍ର ନିଷ୍କଳଙ୍କ ସୀତା ଦେବୀଙ୍କୁ ପୁଣି ବନବାସ ତ ଦେଇଥିଲେ । ଆଉ ଆପଣ—

ରାମଚନ୍ଦ୍ର—ପ୍ରଭୁ ରାମଚନ୍ଦ୍ର କିଛି ଭଲକରି ନଥିଲେ ରାଜଗୁରୁ ମହାଶୟ । ପିତାଙ୍କ ସତ୍ୟରକ୍ଷା କଲେ ଅଯୋଧ୍ୟାର ସିଂହାସନ ପରିତ୍ୟାଗ କରି ସେ ଯେଉଁ ମହାନୁଭବତା ପ୍ରଦର୍ଶନ କରିଥିଲେ, ଗୋଟିଏ ଦାମ୍ଭିକ କଳଙ୍କଜନିତ ବାର୍ତ୍ତାଳାପକୁ କେନ୍ଦ୍ର କରି ସୀତା ଦେବୀଙ୍କ ପରି ପତ୍ନୀଙ୍କୁ ବନବାସ ଦେଇ ସ୍ତ୍ରୀ ଜାତିର ସେ ସେତିକି ଅମର୍ଯ୍ୟାଦା କରିଛନ୍ତି ରାଜଗୁରୁ ଆପଣ । ମୁଁ ବରଂ ସିଂହାସନ

ପରିତ୍ୟାଗ କରିବ କିନ୍ତୁ ମୁଁ ମୋର ପ୍ରାଣର ପ୍ରେୟସୀ ମହାରାଣୀ ସୂର୍ଯ୍ୟମଣିଙ୍କୁ ଛାଡ଼ିପାରିବ ନାହିଁ ।

ରାଜଗୁରୁ—ଆପଣ ଆଉ ଥରେ ବିଚାର କରନ୍ତୁ ମହାରାଜ । ଆପଣଙ୍କ ଦାୟାଦମାନେ ଏବେ ମଧ୍ୟ ସିଂହାସନ ପାଇଁ ଅନୁପଯୁକ୍ତ । ଆପଣଙ୍କ ସିଂହାସନ ତ୍ୟାଗ ଶତ୍ରୁମାନଙ୍କୁ ଉତ୍ସାହ କରିବ । ପ୍ରଭୁ ଜଗନ୍ନାଥଙ୍କ ଅନିଷ୍ଟ ହେବ ମହାରାଜ ।

(ସେତେବେଳେ ନେପଥ୍ୟରେ କୋଳାହଳ ଶୁଣାଗଲା । ସମ୍ମିଳିତ କଣ୍ଠରୁ ଧ୍ୱନିଧ୍ୱନି ଶୁଣାଗଲା 'ଯବନୀ କନ୍ୟା —ପରିତ୍ୟାଗ କର ?' )

ରାମଚନ୍ଦ୍ର—ଶୁଣି ପାରୁଛନ୍ତି ରାଜଗୁରୁ ଆପଣେ ? ପ୍ରଜାମାନଙ୍କ ଚିତ୍କାର ଶୁଣିପାରୁଛନ୍ତି ? ପ୍ରଭୁ ଚକାଡୋଳାଙ୍କ ଚରଣ ସେବକଙ୍କୁ ସେମାନେ ଚାପ ଦେଉଛନ୍ତି ଏକ ଅଯୌକ୍ତିକ କାର୍ଯ୍ୟ ସମ୍ପାଦନ କରିବାପାଇଁ । ଯବନୀ କନ୍ୟା ପରିହାର ନ କରିବା ପର୍ଯ୍ୟନ୍ତ ଆପଣମାନେ ମୋତେ ମନ୍ଦିର ଭିତରକୁ ପ୍ରବେଶ କରିବାର ଅଧିକାର ଦେଲେ ନାହିଁ । ମୁଁ ମୋର ହୃଦୟ ମନ୍ଦିରରେ ପ୍ରଭୁଙ୍କୁ ସ୍ଥାପନ କରି ଆପଣମାନଙ୍କ ବାରଣକୁ ଶିରୋଧାର୍ଯ୍ୟ କଲି । ଆଜି ମୋର ଆତ୍ମାକୁ ହତ୍ୟା କରି ମୋର ବିବେକକୁ ଅବମାନନା କରି ଏବଂ ସର୍ବୋପରି ମୋର ପ୍ରିୟ ଚକାଡୋଳାଙ୍କ ଆଦର୍ଶକୁ ପଦଦଳିତ କରି ମୁଁ ମୋର ବିବାହିତା ପତ୍ନୀକୁ ପରିତ୍ୟାଗ କରି ପାରିବ ନାହିଁ । ପ୍ରଭୁ ରାମଚନ୍ଦ୍ର ବନେ ପିତୃ ସତ୍ୟ ପାଳନ କରିବାକୁ ସିଂହାସନ ପରିତ୍ୟାଗ କରିଥିଲେ । ଆଜି ଓଡ଼ିଶାର ଗଜପତି ଦ୍ୱିତୀୟ ରାମଚନ୍ଦ୍ର ଦେବ ନାରୀ ଜାତିର ସମ୍ମାନ ରକ୍ଷା କରିବାକୁ ସିଂହାସନ ପରିତ୍ୟାଗ କରିବାକୁ କୁଣ୍ଠିତ ହେବ କାହିଁକି ?

(ମହାରାଣୀଙ୍କୁ ଲକ୍ଷ୍ୟ କରି)—ଚାଲ ଭଦ୍ରେ ? ଯେଉଁଠାରେ ଯୁକ୍ତି ରହେନାହିଁ, ସେଠାରେ ମୁକ୍ତି ମିଳେ ନାହିଁ । ଚାଲ, ଆମେ ଚାଲିଯିବା ସୁଦୂର ଅରଣ୍ୟକୁ ଯେଉଁଠି ଆମକୁ ମଣିଷପଣିଆ ଦେଖାଇ ବଞ୍ଚି ରହିବାକୁ କେହି ବାରଣ କରିବେ ନାହିଁ ।

( ଗୋଟିଏ କରୁଣ ସଙ୍ଗୀତର ମୂର୍ଚ୍ଛନା ଶୁଣାଗଲା । ମହାରାଜ ଓ ମହାରାଣୀ ପତିତପାବନଙ୍କୁ ଶେଷ ନମସ୍କାର ଜଣାଇ ଚାଲିଗଲେ । ସେତେବେଳେ ପ୍ରଭୁଦତ୍ତ କଣ୍ଠରେ ଶୁଣାଗଲା : "ରାମଚନ୍ଦ୍ର ଦେବଙ୍କ ସିଂହାସନ ପରିତ୍ୟାଗ ପରେ ଓଡ଼ିଶାର ଗଜପତିମାନେ ଅପମାନିତ ହେଲେ, ଲାଞ୍ଛିତ ହେଲେ—ପ୍ରଭୁ ଜଗନ୍ନାଥଙ୍କ ଉପରେ ଘନଘନ ଆକ୍ରମଣ ହେଲା । ତଥାପି ଆମେ କିଛି ଶିଖି ପାରିଲୁ ନାହିଁ । ଏପରିକି ବିଂଶ ଶତାବ୍ଦୀର ଶ୍ରେଷ୍ଠ ମାନବ ମହାତ୍ମାଗାନ୍ଧୀ ହରିଜନମାନଙ୍କୁ ମନ୍ଦିର ପ୍ରବେଶ ଅଧିକାର ଦିଆଯାଇ ନଥିବାରୁ ଅଭିମାନରେ ଶ୍ରୀ ମନ୍ଦିର ଦର୍ଶନ କଲେ ନାହିଁ; ତଥାପି ଆମେ କିଛି ଶିକ୍ଷା କରି ପାରିଲୁ ନାହିଁ । ଆଜି ଆମେ ଏକ ଯୁକ୍ତିହୀନ ପରମ୍ପରାର ଦୋହାଇ ଦେଇ ପ୍ରଭୁ ଜଗନ୍ନାଥଙ୍କ ପ୍ରକୃତ ଭକ୍ତମାନଙ୍କୁ ଏବେ ମଧ୍ୟ ମନ୍ଦିର ପ୍ରବେଶର ଅଧିକାର ଦେଉନାହୁଁ । ଏହାର ପ୍ରତିବାଦ କରିବାକୁ ହେବ—ବିପ୍ଳବ କରିବାକୁ ହେବ, ବିଦ୍ରୋହ କରିବାକୁ ହେବ—ହଁ, ହଁ ବିଦ୍ରୋହ—ବିପ୍ଳବ ।" ଏହି ଶବ୍ଦର ପ୍ରତିଧ୍ୱନିରେ ବାୟୁମଣ୍ଡଳ ପ୍ରକମ୍ପିତ ହେଲା ।.)

[ ଧୀରେ ଧୀରେ ରଙ୍ଗମଞ୍ଚ ଆଲୋକିତ ହେବା ସମୟରେ ପୂର୍ବ ଅବସ୍ଥାରେ ପ୍ରଭୁଦତ୍ତ ଓ ତାର ବନ୍ଧୁମାନେ ପଣ୍ଡା ସହିତ କଥୋପକଥନ କରୁଛନ୍ତି । ]

ପଣ୍ଡା—ଯେତେ ହେଲେ ବି ପ୍ରେଷ୍ଟିବାବୁ, ପ୍ରଭୁଙ୍କର କେହି କିଛି କ୍ଷତି କରି ପାରି ନାହାନ୍ତି । ଆମେ ନିତି ନିୟମରେ ଅବହେଳା କରୁନାହୁଁ ମ', ପ୍ରଭୁ ଜଗନ୍ନାଥ ତାଙ୍କ ସେବକମାନଙ୍କ ଉପରେ ବହୁତ ସନ୍ତୁଷ୍ଟ ।

ପ୍ରଭୁଦତ୍ତ—ଏ ତୁମର ଭ୍ରାନ୍ତ ଧାରଣା । ବର୍ତ୍ତମାନର ସେବକମାନେ ପ୍ରଭୁଙ୍କର ସେବା କରୁ ନାହାନ୍ତି ଯେ ସେମାନେ ପ୍ରଭୁଙ୍କୁ ଅପମାନିତ କରୁଛନ୍ତି । ପ୍ରଭୁଙ୍କ ବଡ଼ ପଣିଆକୁ ଲୁଚେଇ ଦେଇ ସେମାନେ କିଛି ଭଲ କାମ କରୁ ନାହାନ୍ତି ।

ପଣ୍ଡା—ତୁମେ ଏମିତି କଥା କହୁଚ ସାନବାବୁ ? ତୁମ ନନା ରମାକାନ୍ତ ବାବୁ ମୁକ୍ତି ମଣ୍ଡପର ସଭାପତି—ତାଙ୍କ ନିର୍ଦ୍ଦେଶରେ ଆମେ କାମ କରୁଛୁ । ତୁମେ ବାପାଙ୍କର ଅବାଧ ହେଉଛ ?

ପ୍ରଦ୍ୟୁମ୍ନ—ନ୍ୟାୟ ପାଇଁ ସଂଗ୍ରାମ କରିବାକୁ ହେବ । ଅଧର୍ମକୁ ହଟେଇ ଧର୍ମର ପ୍ରତିଷ୍ଠା କରିବାକୁ ହେବ । ଏଇଠି ବାପା ଭାଇଙ୍କ ବାଧ ହେବାର ପ୍ରଶ୍ନ ଉଠୁଚି କେଉଁଠୁ ? ଅନ୍ୟାୟ ବିରୁଦ୍ଧରେ ସଂଗ୍ରାମ କରିବାକୁ ହେବ ।

[ ମଞ୍ଚ ଅନ୍ଧକାର ହୋଇଗଲା । ସମବେତ କଣ୍ଠରେ ଶୁଣାଗଲା "ଆମେ ବିଦ୍ରୋହ କରିବୁ—ଆମେ ସଂଗ୍ରାମ କରିବୁ । ଆମେ ଅଧର୍ମକୁ ହଟେଇ ଧର୍ମର ପ୍ରତିଷ୍ଠା କରିବୁ ।" ତାପରେ ବାଜି ଉଠିଲା ସଂଗ୍ରାମୀ ଗାଏ ସଙ୍ଗୀତ । ]

[ ମଧ୍ୟାନ୍ତର ]

—ଅନ୍ୟ ଦୃଶ୍ୟ—

[ ମଞ୍ଚ ଆଲୋକିତ ହେବା ସମୟରେ ରମେଶ ତାର ବନ୍ଧୁମାନଙ୍କ ସହିତ କଥାବାର୍ତ୍ତା ହେବାର ଦେଖାଯାଉଥିଲା । ]

ରମେଶ—ବୁଝିଲୁ ଭାଇ ଆଜାଦ୍ । ତୁ ଟା ପୁଅ ସଲେସ୍—ନଦାରଦ୍ । ଖାଲି ମୁହଁ ପୁଟାଣି ମାରୁଛୁ । ତୋ ମାଲ୍ ଉପରେ ବେଟା ପ୍ରଦ୍ୟୁମ୍ନର ଆଖି—ଆଉ ତୁ ଚୁପ୍‌ଚାପ୍ ସନ୍ଧି ନେଉଛୁ ?

ଆଜାଦ୍—ଏଥର ବେଟା ପ୍ରଦ୍ୟୁମ୍ନକୁ ଦେଖି ନେବ । ଶାଳାକୁ ଏମିତି ଧୁଲେଇବ ଯେ ଜନ୍ଦେଗୀ ସାରା ୟାଦ୍ କରିଥିବ । ନହେଲେ ହାସିନାକୁ ବଡ଼ଦାଣ୍ଡରୁ ଫୁଁ ଉଠେଇ ନେବ ।

ଜନ୍—ଆବେ ଏଇଟା ସିନେମା ହୋଇଛି ଯେ ତାକୁ ଫୁଁ ଉଠେଇ ନେବୁ ? ବେଟା ପ୍ରଦ୍ୟୁମ୍ନ ଉପରେ ଉତ୍ତମ ମଧ୍ୟମ ହେଲେ ଶାଳା ପାଠ

ଶିଖଯିବ । ଆମେ ତ୍ରିମୂର୍ତ୍ତି—ବ୍ରହ୍ମା-ବିଷ୍ଣୁ-ମହେଶ୍ବର—ଆଜାଦ୍-ରମେଶ-ଜନଓ୍ବାକର୍ । ଶାଳକୁ ଏତିକ ମାଲୁମ୍ ନାହିଁ ?

ରମେଶ—ଓ୍ୟାଃ ଓ୍ୟାଃ । ଓ୍ୟାଣ୍ଡରଫୁଲ୍ ଆଇଡିଆ । ବ୍ରହ୍ମା-ବିଷ୍ଣୁ-ମହେଶ୍ବର—ଆଜାଦ୍-ରମେଶ-ଜନଓ୍ବାକର୍ ।

( ଏଇ ବକ୍ତବ୍ୟ ଦୁଇ ତିନଥର ଗୁଞ୍ଜରିତ ହେଲା । ରଙ୍ଗମଞ୍ଚ ଅନ୍ଧାର ହୋଇଗଲା । )

—ଦୃଶ୍ୟାନ୍ତର—

[ ରଙ୍ଗମଞ୍ଚ ଆଲୋକିତ ହେଲାବେଳକୁ କୃଷ୍ଣ ଚେତନା ସମିତିର ସଦସ୍ୟମାନେ ତନ୍ମୟ ହୋଇ 'ହରେକୃଷ୍ଣ ହରେ ରାମ' କୀର୍ତ୍ତନ କରୁଛନ୍ତି ଅରୁଣସ୍ତମ୍ଭ ନିକଟରେ । ଦଳେ ଭଡ଼ାଟିଆ ଗୁଣ୍ଡା ଧରି କେତେଜଣ ପଣ୍ଡାଙ୍କର ପ୍ରବେଶ । ]

ପଣ୍ଡା—ଆବେ ବେଧର୍ମୀ ଗୁଡ଼ାକ—ତୁମେ ଯେତେ ଚିତ୍କାର କଲେ ବି ସ୍ଳା ପୋ ତୁମ କଥା ପ୍ରଭୁ ଜଗନ୍ନାଥ ଶୁଣିବେ ନାହିଁ । ଏ ଜାଗାଟାକୁ ଏଗୁଡ଼ାକ ଅପବିତ୍ର କରି ପକେଇଲେଣି । କହୁଛି, ଭଲରେ ଭଲରେ ଚାଲିଯାଅ ।

ଭକ୍ତଗଣ—( ପଣ୍ଡା କଥା ନ ଶୁଣି କୀର୍ତ୍ତନରେ ନିଜକୁ ହଜେଇ ଦେଇଛନ୍ତି । )

ପଣ୍ଡା—କି ନଲଠା ଗୁଡ଼ାକ ଏ ସବୁ । ଠେଙ୍ଗଣି ଦରକାର ଏମାନଙ୍କୁ । ଲଗାଅ ସ୍ଳା ପୋଙ୍କୁ ।

[ ଇସାରା ଦେଲା ଗୁଣ୍ଡାମାନଙ୍କୁ । ଗୁଣ୍ଡାମାନେ ଲାଠି ଉଠାଇ ଭକ୍ତମାନଙ୍କୁ ମାରିବାକୁ ଉଦ୍ୟତ ହେବା ସମୟରେ ପ୍ରଭୁଦତ୍ତ ଓ ତାର ବନ୍ଧୁମାନଙ୍କ ପ୍ରବେଶ । ]

ପ୍ରଭୁଦତ୍ତ—ଏ କଣ କରୁଛ ତୁମେମାନେ ? ପ୍ରଭୁଙ୍କ କୀର୍ତ୍ତନରତ ଭକ୍ତମାନଙ୍କୁ ତୁମେ ଲାଠି ପ୍ରହାର କରୁଛ ? ଘୁଞ୍ଚିଯାଅ କହୁଛି ।

ଗୁଣ୍ଡା—ମୁହିଁ ସମ୍ଭାଳ କଥା କୁହ ସାନବାବୁ । ନ ହେଲେ ତୁମକୁ ମଧ ଉତ୍ତମ ମଧ୍ୟମ ହୋଇଯିବ ।

ବଲଗାର ସିଂ—କଣ କହିଲୁ ? ଖବରଦାର୍ କହୁଛି—ମୋ ସାଙ୍ଗ ଦେହରେ ଯଦି ଟିପଟିଏ ବି ବାଜୁଛି, ମୁଁ ତୁମ ସମସ୍ତଙ୍କୁ ସାବାଡ଼୍ କରିଦେବି —ନ ହେଲେ ମୋ ନାମ ବଲଗାର ସିଂ ନୁହେଁ ।

[ ଏଣ୍ଡକବେଳେ ରମେଶ ଓ ତାର ବନ୍ଧୁମାନଙ୍କର ପ୍ରବେଶ । ]

ରମେଶ—ମନ୍ଦିର ଭିତରକୁ କିଏ ପଶିବ କିଏ ନ ପଶିବ ଏ ବିଷୟରେ ମୁଣ୍ଡ ଖେଳେଇବାକୁ ତୁ କିଏବେ ସର୍ଦ୍ଦାର ଜୀ ?

ପ୍ରଭୁଦତ୍ତ—ତମେ ବଲ୍‌ଗାରକୁ ଏମିତି ଅଭଦ୍ର ଭାବରେ ସମ୍ବୋଧନ କରି-ପାରିବ ନାହିଁ ।

ଆଜାଦ୍—ବକ୍‌ବାସ୍ ବନ୍ଦକର ପ୍ରଭୁଦତ୍ତ । ଧର୍ମ ସଂସ୍କାର ତୋର ଗୋଟିଏ ଫିସାଦି । ତୁ ଚାହୁଁଛୁ ମୋର ଜାନ୍ ହାସିନାକୁ ଉଡ଼େଇ ନେବା ପାଇଁ । ମୁଁ ଏତେ ସହଜରେ ତୋତେ ତାହା କରିବା ପାଇଁ ଦେବିନ । ଆଜି ଅସଲ ମୌକା ଆସିଛି । ତୋତେ ସାବାଡ଼୍ କରିଦେବି ।

ସଉକତ୍—ବୁଝିଲୁ ଆଜାଦ୍, ତୋର ଘରେଇ ମାମଲା ଏଇଠି ପକାନା କହୁଛି । ଆଉ ତୁ ପ୍ରଭୁଦତ୍ତକୁ ସାବାଡ଼୍ କରିବା ପୂର୍ବରୁ ମୁଁ ବି ତୋତେ ଦେଖିନେବି ।

ରମେଶ—ଚୁପ୍‌କର୍ ଶାଲା ମିଆଁ ସଉକତ୍ । ତୋର ଏତେ ବଢ଼ପ ।

ପ୍ରଭୁଦତ୍ତ—ପ୍ଲିଜ୍ ହୋଲ୍‌ଡ ଇଓର ଟଙ୍ଗ୍ । ବିଫୋର୍ ଇଓରସେଲ୍‌ଫ୍— ସଉକତ୍‌କୁ ଶାଲା ମିଆଁ କହିବାକୁ ଲଜ୍ଜା ଲାଗୁନ ।

ରମେଶ—ମାଷ୍ଟର ହେଇଛି ! ଶାଲା ଆମକୁ ବ୍ୟବହାର ଶିଖଉଛି ! ( ଗୁଣ୍ଡାମାନଙ୍କୁ ) ଦେଖୁଛ ଭାଇମାନେ, ଦଳେ ବେଧର୍ମୀଙ୍କୁ ଧରି ପ୍ରଭୁଦତ୍ତ ପାଲ ଲଗାଇଛି ଏଇଠି । ଲଗାମ ଶଳାମାନଙ୍କ ଉପରେ ।

ପ୍ରଭୁଦତ୍ତ—କିଏ ଧାର୍ମିକ, ଆଉ କିଏ ବେଧର୍ମୀ ତାର ଫଇସଲା କରିବାକୁ ତୁମେ କିଏ ? ଆଜାଦ୍ ଓ ଜନ୍‌କୁ ଧରି ମଦ ମାଂସର ପ୍ରାଚୁର୍ଯ୍ୟରେ

ଯାର ସମସ୍ତ କଟୁଛି, ସେ ପୁଣି ଆସିଛି ବେଧର୍ମୀଙ୍କୁ ହଟାଇବା ପାଇଁ ? ତୁମର ଟିକିଏ ଲଜ୍ଜା ଥିବା ଦରକାର ।

ଜନ୍—ଦେଖ ହୋ ! ନିଜେ ବେହିଆ ହୋଇ ଆମମାନଙ୍କୁ ନିନ୍ଦା ଅପବାଦ କରୁଛି । ( ଗୁଣ୍ଡାମାନଙ୍କୁ ଉଦ୍ଦେଶ୍ୟ କରି ) ଭାଇମାନେ, ମୋର ବଡ଼ ଦେଉଳକୁ ଅପବିତ୍ର କରିବାକୁ ବସିଛି ଏହି ବଜାରୁ ଲୋକ । ଆଉ ଅନେଇଛ କ'ଣ ? ଲଗାଅ ଠେଙ୍ଗୁଣି ।

( ଗୁଣ୍ଡାମାନେ ଆଗେଇ ଆସିଲେ । )

ବଲବୀର ସିଂ—ହଟିଯାଓ ପିଛେ । ମୋର କୃପାଣକୁ ଇସ୍ତମାଲ୍ କରିବାକୁ ମୋତେ ମଜବୁର୍ କରନାହିଁ । ( ଜଣେ ଗୁଣ୍ଡା ହାତରୁ ଠେଙ୍ଗା ଛଡ଼େଇ ନେଇ ) ମୋ ହାତରେ ଠେଙ୍ଗା ମାଡ଼ଲେ କେମିତି ଲାଗେ ତାହା ବି ମୁଁ ବତେଇ ଦେବି ।

( ଗୁଣ୍ଡାମାନେ ଘଞ୍ଚିଗଲେ । )

ସଉକତ୍—ବୁଜ୍‌ଦିଲ୍ କାହିଁ କା ! ଲୁହା କଅଁଳ ଦେଖିଲେ ବିରାଡ଼ି ବି କାମୁଡ଼େ । ଏ ଗୁଣ୍ଡାକୁ ଘୁଞ୍ଚିବାର ନୁହେଁ । ( ବଲବୀର ହାତରୁ ଠେଙ୍ଗା ଛଡ଼େଇ ନେଇ ) ବଲବୀର୍ ତୁ କୃପାଣ ଇସ୍ତମାଲ୍ କର ଆଉ ମୁଁ ଠେଙ୍ଗା ଚଲଉଛି ।

ପ୍ରଭୁଦତ୍ତ—( ଆଗକୁ ବଢ଼ିଆସି ) ଘୁଞ୍ଚ ଭାଇ ସେମାନଙ୍କୁ । ଯେଉଁମାନେ ଭୀରୁ ସେମାନେ ହିଁ ହିଂସାର ଆଶ୍ରୟ ନିଅନ୍ତି । ଆମର ବିବେକ ନିର୍ମଳ । ଆମର ଡରିବାର ନାହିଁ ।

ରମେଶ—ଆଉ ଭଲେଇ ହ' ନାହିଁ କହୁଛି । ଆମକୁ ଚୁପ୍ ଭୁକିବାକୁ ଧମକ ଦେଇ ପୁଣି ଭଦ୍ରାମି ଦେଖଉଛୁ ? ( ଗୁଣ୍ଡାମାନଙ୍କୁ, ନିଜ ବନ୍ଧୁମାନଙ୍କୁ ଏବଂ ପଣ୍ଡାମାନଙ୍କୁ ଲକ୍ଷ୍ୟକରି । ) ଭାଇମାନେ, ମୁକ୍ତି ମଣ୍ଡପରେ ଏହି ହିଂସାକାଣ୍ଡର ଫଇସଲା କରିବା ।

[ ଦୁଷ୍ଟ ପ୍ରକୃତିର ଲୋକଗୁଡ଼ିକ ଗୁଳିଗଲେ । ପୁଣି ଥରେ 'ହରେ କୃଷ୍ଣ ହରେ ରାମ' ଧ୍ୱନିରେ ବାୟୁମଣ୍ଡଳ ଝଂକୃତ ହେଲା । ଧୀରେ ଧୀରେ ମଞ୍ଚ ଅନ୍ଧକାର ହୋଇଗଲା । ]

—ଦୃଶ୍ୟାନ୍ତର—

[ ମଞ୍ଚ ଆଲୋକିତ ହେଲା ବେଳକୁ ମୁକ୍ତିମଣ୍ଡପର ବୈଠକେ ବସିଛି । ପୌରହିତ୍ୟ କରୁଛନ୍ତି ପଣ୍ଡିତ ରମାକାନ୍ତ ତ୍ରିପାଠୀ । ]

ରମେଶ—ଏ ବେଧର୍ମୀମାନେ ଆମମାନଙ୍କ ପୂଜା ଆରାଧନାରେ ବ୍ୟାଘାତ ଦେଉଛନ୍ତି । ସେମାନଙ୍କୁ ଭଲରେ କହିଲେ ସେମାନେ ଛୁରୀ ଦେଖାଇ ଆମକୁ ଧମକଉଛନ୍ତି । ଆଜ ମୁକ୍ତିମଣ୍ଡପ ତାର ଫଇସଲା କରୁ । ନଚେତ୍ ମୋ ଭଳିଆ ନିରୀହ ବ୍ରାହ୍ମଣମାନେ ମନ୍ଦିର ଭିତରେ ପୂଜା ଅର୍ଚ୍ଚନା କରିପାରିବେ ନାହିଁ ।

ପଣ୍ଡା—ରମେଶବାବୁ ଠିକ୍ କଥା କହୁଛନ୍ତି । ଦଳେ ବେଧର୍ମୀଙ୍କୁ ଜୁଟେଇ ପ୍ରଭୁଦତ୍ତ ବାବୁ ନାଲିଆଖି ଦେଖାଇ ଆମକୁ ଡରଉଛନ୍ତି ଆଉ ଧମକଉଛନ୍ତି । ଗୁଣ୍ଡାଶ୍ରେଣୀ ଲୋକମାନଙ୍କୁ ଆଣି ଆମର ଧନଜୀବନ ବିପନ୍ନ କରୁଛନ୍ତି । ଆମର ମାନମହତ କଥା କିଏ ପଚ୍ଛରେ ।

ମୁକ୍ତିମଣ୍ଡପର ଜଣେ ପଣ୍ଡିତ—ଏହା ଯଦି ସତ୍ୟ, ତେବେ ଏହା ଅତ୍ୟନ୍ତ ଗୁରୁତର । ଏହାର ଆଶୁ ପ୍ରତିକାର ନିତାନ୍ତ ପ୍ରୟୋଜନ ।

ରମେଶ—ଆପଣମାନେ ଯଦି ଚାହାନ୍ତି, ମୁଁ ଆପଣଙ୍କ ସାମନାରେ ନିରୀହ ଭକ୍ତମାନଙ୍କୁ ପେଶ୍ କରିବାକୁ ପ୍ରସ୍ତୁତ ।

ଦ୍ୱିତୀୟ ପଣ୍ଡିତ—ବେଶ୍ ସେୟା ହେଉ ।

[ ମୁଣ୍ଡରେ ହାତରେ ପଟି ବାନ୍ଧି ସେ ଦିନର ଗୁଣ୍ଡାମାନଙ୍କ ପ୍ରବେଶ । ]

ରମେଶ—ଏଇ ଦେଖନ୍ତୁ ପ୍ରଭୁଦତ୍ତର କରାମତି । ଏହି ନିରୀହ ଭକ୍ତମାନେ ପ୍ରଭୁଦତ୍ତର ଗୁଣ୍ଡାମାନଙ୍କ ଦ୍ୱାରା କପରି ନିର୍ଯ୍ୟାତିତ ହୋଇଛନ୍ତି ତାହା ଅବର୍ଣ୍ଣନୀୟ । ଏତେଦିନ ପର୍ଯ୍ୟନ୍ତ ସେ ମୁକ୍ତିମଣ୍ଡପର ସଭାପତିଙ୍କ ପୁଅ ବୋଲି ଆମେ କିଛି କହୁନଥିଲୁ । ସବୁ ଜିନିଷର କିନ୍ତୁ ଗୋଟିଏ ସୀମା ଅଛି । ଆଜ ମୁକ୍ତିମଣ୍ଡପ ଏହାର ଫଇସଲା କରୁ ।

୩ୟ ପଣ୍ଡିତ—ତାଙ୍କୁ ଜାତିରୁ ବାସନ୍ଦ କରାଯାଉ । ସିଂହଦ୍ୱାରକୁ ଆସିବା ପାଇଁ ତା ଉପରେ ପ୍ରତିବନ୍ଧ ଲଗାଯାଉ ।

୪ର୍ଥ ପଣ୍ଡିତ—ଥରେ ପ୍ରଭୁଦତ୍ତଙ୍କୁ ଶୁଣିବା ପରେ କୌଣସି କାର୍ଯ୍ୟାନୁଷ୍ଠାନ କଲେ ଭଲ ହୁଅନ୍ତା ବୋଲି ମନେହୁଏ । ମୁଁ ଶୁଣିଛି ସେ ଅତ୍ୟନ୍ତ ସୁଶୀଳ ଓ ଚରିତ୍ରବାନ୍—

୨ୟ ପଣ୍ଡିତ—ଚୁପ୍‌କର ହେ ମହାପାତ୍ରେ । ସବୁ କଥାରେ ତୁମର ଯୁକ୍ତି । ନେଡ଼ଗୁଡ଼ କହୁଣିକୁ ବୋହିଗଲାଣି । ପୁଣି ତେମେ କଥାକୁ ଲମ୍ବେଇବାକୁ ଚାହୁଁଛ ।

ଅନେକ ପଣ୍ଡିତ—( ସମସ୍ୱରରେ ) ଠିକ୍ କଥା, ଠିକ୍ କଥା । ଚଞ୍ଚଳ ଫଇସଲ କରାଯାଉ । ଦୋଷୀକୁ ଦଣ୍ଡ ଦିଆଯାଉ ।

ରମାକାନ୍ତ—ଆପଣମାନେ ଯାହା ଠିକ୍ ସ୍ଥିର କରିବେ ସେ ସେଥିରେ ସହମତ । ପ୍ରଭୁଦତ୍ତ ଆଉ ମୋର କାହିଁରେ ନାହିଁ । ତେଣୁ ଏହି ମୁକ୍ତିମଣ୍ଡପର ସିଦ୍ଧାନ୍ତ ମୋର ଶିରୋଧାର୍ଯ୍ୟ ।

ପ୍ରଥମ ପଣ୍ଡିତ—ସାବାସ୍ ରମାକାନ୍ତ ବାବୁ । ବାରଣ ବଡ଼େଇର ଦାୟୁ ନା ପୁଅର ଦାୟୁ ? ଆମ ସଂସ୍କୃତି କହୁଛି ଦଶ ଓ ଦେଶ ପାଇଁ ସ୍ୱାର୍ଥ-ତ୍ୟାଗ କରିବାକୁ ହେବ । ଆପଣ ଠିକ୍ କାମ କରିଛନ୍ତି । ଆମ ଦେଶ, ଧର୍ମ ଓ ସଂସ୍କୃତିର ଟେକ ଆପଣ ରଖିଛନ୍ତି ।

୩ୟ ପଣ୍ଡିତ—ତାହାହେଲେ ମୋର ପ୍ରସ୍ତାବ ଗ୍ରହଣ କରାଯାଉ ।

ସମସ୍ତେ—( ସମସ୍ୱରରେ ) ତଥାସ୍ତୁ ।

ରମେଶ ଓ ତାର ଗୁଣ୍ଡା ବନ୍ଧୁମାନେ—ମୁକ୍ତିମଣ୍ଡପ ଜିନ୍ଦାବାଦ । ହିନ୍ଦୁ ସଂସ୍କୃତି ଜିନ୍ଦାବାଦ ।

[ ଏହି ଧ୍ୱନିରେ ରଙ୍ଗମଞ୍ଚ ମୁଖରିତ ହେବା ସମୟରେ ମଞ୍ଚ ଧୀରେ ଧୀରେ ଅନ୍ଧାର ହୋଇଯାଏ । ]

—ଦୃଶ୍ୟାନ୍ତର—

[ ମଞ୍ଚ ଆଲୋକିତ ହେବା ସମୟରେ ପଣ୍ଡିତ ରମାକାନ୍ତ ତ୍ରିପାଠୀ ଶାୟିତ । ବିଭିନ୍ନ ରଙ୍ଗର ଆଲୋକର ଡେଉ

ତାଙ୍କ ମୁଣ୍ଡ ଉପରେ ଭାସିଯାଇ ସ୍ୱପ୍ନର ସୂଚନା ଦିଏ । ]

( ସଞ୍ଜବତୀ ଧରି ମାୟାଦେବୀ ପ୍ରବେଶ କଲେ । ଧୀରେ ଧୀରେ ସ୍ଥିରଆଡ଼ ଆଲୋକରେ ଉଦ୍ଭାସିତ ହେଲା । ବର-ବେଶରେ ପ୍ରଭୁଦତ୍ତ ଓ ବଧୂ ବେଶରେ ହାସିନାର ପ୍ରବେଶ । ହାସିନାର ମୁଣ୍ଡରେ ସିନ୍ଦୁରର ଗାର ବେଶ୍ ଶୋଭା ପାଉଥିଲା । )

ପ୍ରଭୁ—ଆମେ ଆସିଯାଇଛୁ ମା । ଆମକୁ ଗ୍ରହଣ କର ।

( ମାୟାଦେବୀ ହୁଳହୁଳି ଦେଇ ସନ୍ଧ୍ୟା ଦୀପକୁ ସାତଥର ବୁଲାଇ ପୁଅ ଓ ବହୂକୁ ବନ୍ଦାନ୍ତି । )

ହାସିନା—( ଗୋଡ଼ତଳେ ପଡ଼ି ) ମୋତେ ଆଶୀର୍ବାଦ କରନ୍ତୁ ମା । ଆପଣଙ୍କୁ ସେବା କରିବାକୁ ମୋତେ ସୁଯୋଗ ଦିଅନ୍ତୁ ।

ମାୟା—( ହାସିନାକୁ କୁଣ୍ଢେଇ ପକେଇ ଆନନ୍ଦ ଗଦଗଦ ହୋଇ କହିଲେ ) —ହଇହେ ଶୁଣୁଛ ! ପ୍ରଭୁ ଆମ୍ଭର ଅଭିମାନ କରି ଚାଲିଯାଇଥିଲା ସିନା, ଦେଖ କେମିତି ସୁନ୍ଦର ବୋହୂଟିଏ ନେଇ ଫେରି ଆସିଛି । ଆଜିର ଉଠନା, ଉଠ ।

( ହଠାତ୍ ରମାକାନ୍ତ ବାବୁଙ୍କ ନିଦ ଭାଙ୍ଗିଗଲା । ପୂର୍ବୋକ୍ତ ଦୃଶ୍ୟ ଉଭେଇଗଲା । ରମାକାନ୍ତବାବୁ ପ୍ରଳାପ କଲା ଭଳି କହି ଉଠିଲେ 'ନା-ନା । ଅସମ୍ଭବ । ହାସିନାକୁ ପ୍ରଭୁଦତ୍ତ ବାହାହେଇ ପାରେନା ।' ତା'ପରେ ସେ ପୁଣି ଶୋଇ ପଡ଼ିଲେ । ପୁଣି ଥରେ ଆଲୋକ ତରଙ୍ଗାୟିତ ହୋଇ ତାଙ୍କ ମୁଣ୍ଡ ଉପରେ ଭାସିଯାଇ ସ୍ୱପ୍ନର ସୂଚନା ଦେଲା । )

( ତାପରେ ଆବିର୍ଭୂତ ହେଲେ ଜଣେ ମୁସଲମାନ ମୌଲବୀ । )

ମୌଲଭୀ—ମୁଁ ମୌଲଭୀ ରହମତ୍ ଅଲ୍ଲୀ—ଆଜାଦ୍‌ର ଆବ୍‌ବା ଜାନ୍ ।
ମୁଁ ତୁମକୁ ସତର୍କ କରାଇ ଦେଉଛି ରମାକାନ୍ତ ବାବୁ । ତୁମର ପୁଅ ପ୍ରଭୁଦତ୍ତକୁ ତୁମେ ସମ୍ଭାଳି ରଖ ନଚେତ୍ ତାର ଅନିଷ୍ଟ ହେବ । ଆମେ ସଂଖ୍ୟାଲଘୁ ସମ୍ପ୍ରଦାୟର ବୋଲି ତୁମେ ଆମକୁ ତୁଚ୍ଛ ଭାବୁଛ ? ମୋର ସମସ୍ତ ରାଜନୈତିକ ଏବଂ ସାମାଜିକ ପ୍ରଭାବ ପକାଇ ମୁଁ ତୁମ ପୁଅର ଅନିଷ୍ଟ କରିବାକୁ ଆଗେଇ ଆସିବି । ତାକୁ କେବଳ ତ୍ୟଜ୍ୟପୁତ୍ର କଲେ ଚଳିବ ନାହିଁ । ହାସିନା ଠାରୁ ତାକୁ ଦୂରେଇବାକୁ ହେବ । ନଚେତ୍ ପରିଣାମ ବିଷମୟ ହେବ । ସାବଧାନ, ହୋସିଆର ।

[ ଧୀରେ ଧୀରେ ମୌଲଭୀଙ୍କ ଚେହେରା ମିଳେଇ ଗଲା । ସେ ଜାଗାରେ ଆବିର୍ଭୂତ ହେଲେ ଜଣେ ଖ୍ରୀଷ୍ଟାନ୍ ପାଦ୍ରୀ । ]

ପାଦ୍ରୀ—ମୁଁ ରେଭେରେଣ୍ଡ ଚାର୍ଲସ୍ ମହାପାତ୍ର । ଜନ୍‌ର ଡାଡ । ମୁଁ ବି ତୁମକୁ ସତର୍କ କରାଇ ଦେଉଛି ରମାକାନ୍ତ ବାବୁ । ତୁମ ପୁଅ ପ୍ରଭୁଦତ୍ତକୁ ସମ୍ଭାଳି ରଖ ନଚେତ୍ ତାର ଅନିଷ୍ଟ ସାଧନ ହେବ । ପାଶ୍ଚାତ୍ୟ ଜଗତର ଦଳେ ବିପଥଗାମୀ ଖ୍ରୀଷ୍ଟାନ୍‌ମାନଙ୍କୁ ଧରି ସେ ଶ୍ରୀମନ୍ଦିରକୁ ପ୍ରବେଶ କରିବାକୁ ଚାହୁଁଛି—ଯିଶୁଙ୍କ ଅତି ପ୍ରିୟ ସେହି ଖ୍ରୀଷ୍ଟିଆନ୍ ବନ୍ଧୁମାନଙ୍କ ଆତ୍ମାକୁ ସେ କଳୁଷିତ କରିବାକୁ ଚାହୁଁଛି । ସେ ନିଜ କାମରୁ ନିବୃତ୍ତ ହେଉ ନଚେତ୍ ପରିଣାମ ବିଷମୟ ହେବ । ସାବଧାନ, ହୋସିଆର ।

( ଧୀରେ ଧୀରେ ପାଦ୍ରୀଙ୍କ ଚେହେରା ମିଳେଇ ଗଲା । ପରି ମୁହୂର୍ତ୍ତରେ ଲାଇଟ୍ ପଡ଼ିଲା ରମାକାନ୍ତ ବାବୁଙ୍କ ମୁହଁରେ । ବିଭ୍ରତ ରମାକାନ୍ତ ବାବୁଙ୍କ ମୁହଁ ବିବ୍ରତ ଜଣାପଡ଼ିଲା । ତାପରେ ପୁଣି ବିଭିନ୍ନ ଆଲୋକର ତେଜ ତାଙ୍କ ମୁଣ୍ଡ ଉପରେ ଝରିଗଲା । ସ୍ୱପ୍ନରେ ଆବିର୍ଭୂତ ହେଲେ ଜଣେ ଗୈରିକ ବସନଧାରୀ ତେଜସ୍ୱୀ ବ୍ୟକ୍ତି । )

ଗୈରିକ ବସନଧାରୀ—ମୁଁ ଜଣେ ଆର୍ଯ୍ୟ ସମାଜୀ । ତୁମେ ବିପଥଗାମୀ ହୋଇ ପଡ଼ୁଛ ରମାକାନ୍ତବାବୁ । ବେଦ ଉପରେ ପର୍ଯ୍ୟବସିତ ହିନ୍ଦୁ ଧର୍ମର ସମ୍ମାନ ଉପରେ ତୁମେ ଆଞ୍ଚ ଆଣୁଛ । ପାନବଡ଼ ଛୁଆଁ ଅଛୁଆଁର ବହୁତ ଊର୍ଦ୍ଧ୍ୱରେ ଏହି ସନାତନ ଧର୍ମ । ଶ୍ରୀ ମନ୍ଦିରର ମୁକ୍ତିମଣ୍ଡପର ସଭାପତି ତୁ ମ । ସନାତନ ଧର୍ମର ତୁମେ ଧ୍ୱଜାଧାରୀ ପଣ୍ଡିତ ରମାକାନ୍ତ ତ୍ରିପାଠୀ । ଆମକୁ ସ୍ପଷ୍ଟୀକୃତ କରି ଆମ ଧର୍ମକୁ ବଞ୍ଚେଇବା ତୁମର ପରମ କର୍ତ୍ତବ୍ୟ । ହେଲେ, ତୁମେ କରୁଛ କ'ଣ ? ତୁମେ ହିନ୍ଦୁ ଧର୍ମକୁ ରସାତଳକୁ ନେଇ-ଯାଉଛ । ବିଭିନ୍ନ ଧର୍ମର ଆଗନ୍ତୁକ ବନ୍ଧୁମାନେ ହିନ୍ଦୁ ଧର୍ମର ପରମ୍ପରାକୁ ଆସି ଖୋଜୁଁଛନ୍ତି ଶାନ୍ତିର ସନ୍ଧାନ ପାଇବାକୁ । ତୁମେ ସେମାନଙ୍କୁ ବେଧର୍ମୀ ବୋଲି ଘଉଡ଼େଇ ଦଉଛ । ତୁମେ ସନାତନ ଧର୍ମର ଶତ୍ରୁ । ତୁମକୁ ଇତିହାସ କ୍ଷମା କରିବ ନାହିଁ । ଶ୍ରୀ ମନ୍ଦିରରେ ଭକ୍ତମାନଙ୍କ ଉପରେ କିପରି ଜୁଲୁମ୍ କରାଯାଉଛି, ଦେଖିବ ତୁମେ ? ଦେଖ :

[ ଗୈରିକ ବସନଧାରୀ ଉଭେଇଗଲେ । ମନ୍ଦିରର ଅଭ୍ୟନ୍ତର ଦେଖାଗଲା । ଜଣେ ଟୋପା ଗୋରୀ ସ୍ତ୍ରୀ— ବବ୍‌ବାଳ, ମୁଣ୍ଡରେ ସିନ୍ଦୁର—ଆଉ ତାଙ୍କ ସଙ୍ଗେ ଆଉ ଜଣେ ଭଦ୍ର ମହିଳା । ପ୍ରଥମୋକ୍ତ ସ୍ତ୍ରୀ ଲୋକଟି ସମ୍ପୂର୍ଣ୍ଣ ଭାବରେ ଭାରତୀୟ ହେଲେ ମଧ୍ୟ ତାଙ୍କ ବବ୍ ବାଳ, ଓଢ଼ଣା ବିହୀନ ମୁଣ୍ଡ ଦେଖି ତାଙ୍କୁ ବିଦେଶୀୟ ବୋଲି ସନ୍ଦେହ କରିବାର ଆଶଙ୍କା ଅଛି । ସେହି ସ୍ତ୍ରୀ ହସ୍ତଙ୍କ ସହିତ ତିନ ଚାରିଜଣ ପଣ୍ଡାଙ୍କ ଯୁକ୍ତିତର୍କ କରୁଥିବା ଦେଖାଗଲା । ]

ପ୍ରଥମ ସ୍ତ୍ରୀଲୋକ—ଦେଖିଏ, ମୁଝେ ପରେସାନ୍ ମତ୍ କୀଜିଏ । ମେ ବମ୍ବେଇସେ ଆଇ ହୁଁ ଜଗନ୍ନାଥ ଦର୍ଶନ କର୍‌ନେ କେ ଲିୟେ । ଆପ୍ ମୁଝେ ଫିରଙ୍ଗି କରସ୍ତାନ କ୍ୟୁଁ ସମ୍‌ଝତେ ହେଁ ? ମୈ ହିନ୍ଦୁ ହୁଁ ।

ପ୍ରଥମ ପଣ୍ଡା—ମିଛ କହୁଛୁ । ଚେହେରା ତ ତୋର ଘରଣୀପୁ ହିନ୍ଦୁ ନାରୀର ଚେହେରା ନୁହେଁ । ସଦାବେଳେ ପାଟିରୁ ଇଂଲଣ ନ ହେଲେ ହାଇ ବାହାରୁଛି ।

ଦ୍ୱିତୀୟ ସ୍ତ୍ରୀଲୋକ—ସେ ମୋର ବାନ୍ଧବୀ । ମୁଁ ଶପଥ ନେଇ କହୁଛି ସେ ଜଣେ ହିନ୍ଦୁ । ନ ହେଲେ ଗୁଡ଼ାଏ ପଇସା ଦେଇ ସେ ଜଗନ୍ନାଥଙ୍କୁ ଛୁଇଁବା ପାଇଁ ବ୍ୟାକୁଳ ହୋଇଥାନ୍ତେ ? ତମେମାନେ ତ ତାଙ୍କ ଠୁଁ ଢେର୍ ପଇସା ଦକ୍ଷିଣା ଆକାରରେ ନେଇ-ସାରିଲଣି—ଜଗନ୍ନାଥଙ୍କୁ ସେ ଛୁଇଁ ବ ସାରିଲେଣି । ପୁଣି କାହିଁକି ହଇରାଣ କରୁଛ ତୁମେ ? ସବୁ କଥାରେ ଥୋଡ଼େ ଥୋଡ଼େ ଟଙ୍କା ମାଗୁଛ !

ଦ୍ୱିତୀୟ ପଣ୍ଡା—ତୁ କଏ ବେ ବଡ୍ଡାର୍ ଓ୍ୟରତ୍, ବକ୍ ବକ୍ ହେଉଛୁ ? ଆମର ହିସାବ୍ ତୋ ସାଙ୍ଗରେ ନୁହେଁ ତା ସାଙ୍ଗରେ ।

ପ୍ରଥମ ସ୍ତ୍ରୀଲୋକ—ଲେଟ୍ ଟୁ ଗୋ ଆଉଏ ମିସେସ୍ ଦାସ, ଆଇ ଆମ୍ ଆଓ୍ୱା-ଫୁଲ ଶୋର୍ଡ଼ । ଯୁହାଁ ସେ ଚଲେ ଯାନେ ସେ ଠୈନ୍ ମିଲେଗା ।

ପ୍ରଥମ ପଣ୍ଡା—କାହାଁ ଯିବୁରେ ଓ୍ୟରତ୍ । ଚଲେ ଅଫିସ୍ କୋ ।

ଦ୍ୱିତୀୟ ସ୍ତ୍ରୀଲୋକ—ହଁ, ଆମେ ନଜେ ଅଫିସ୍‌କୁ ଯିବୁ । ହେଲେ, ପ୍ରଥମେ ମା ବିମଳା ଓ ମହାଲକ୍ଷ୍ମୀଙ୍କୁ ଦର୍ଶନ କରିବା ପୂର୍ବରୁ ନୁହେଁ ।

(ଏତକ କହି ବିମଳାଙ୍କ ମନ୍ଦିର ଆଡେ ଆଗେଇ ଯାଉଥିଲେ ।)

ଦ୍ୱିତୀୟ ପଣ୍ଡା—(ହାତ ଧରି) ଏଡ଼େ ବଢ଼ପ ତୋର ! ଗୋଟିଏ ମ୍ଳେଛକୁ ସାଙ୍ଗରେ ଆଣିଛୁ, ପୁଣି କହୁଛୁ କ'ଣ ମା ବିମଳାଙ୍କୁ ଆଉ ମହାଲକ୍ଷ୍ମୀଙ୍କୁ ବି ଦର୍ଶନ କରିବ ! ଚାଲ୍ ମୋ ସାଙ୍ଗରେ କହୁଛି ।

ଦ୍ୱିତୀୟ ସ୍ତ୍ରୀଲୋକ—(ହାତ ଛଡ଼ାଇ) ମୋ ହାତ ଧରନା କହୁଛି । ମୁଁ ଜଣେ ଭଦ୍ର ମହିଳା । ତମେ ମୋ ସାଙ୍ଗରେ ଏମିତି ବ୍ୟବହାର କ'ଣ କରୁଛ ?

ପ୍ରଥମ ପଣ୍ଡା—ଭଦର୍ ମହିଳା ! ଯୁାପୋର ସାହସ ଦେଖ । ଆମ ସାଙ୍ଗରେ ଲାଗୁଛି । ରେ ପଣ୍ଡାଭାଇମାନେ ଧାଇଁ ଆସିଲ । ଏ ମାଇକନାର ମଜା ବାହାର କରିଦେବା ।

( ଦଳେ ପଣ୍ଡା ପହଞ୍ଚିଗଲେ । ଦଳେ ଭକ୍ତ ଭୂମି ହୋଇ
ଦୂରରୁ ଏ ଦୃଶ୍ୟ ଦେଖିଥିଲେ । )

ଦ୍ୱିତୀୟ ସ୍ତ୍ରୀଲୋକ—କ'ଣ ଆମକୁ ମାରିବ ନା କ'ଣ ? ଏମିତି ଘେରି
ଯାଇଛ କାହିଁକି ?

ପ୍ରଥମ ପଣ୍ଡା—( ଧକ୍କା ଦେଇ ) ଚାଲ୍, ଅଫିସ୍‌କୁ କହୁଛୁ ।

( ଅନ୍ୟ ପଣ୍ଡାମାନେ ମଧ୍ୟ ସେମାନଙ୍କୁ ଠେଲିପେଲି
ଅଫିସ୍ ଆଡ଼କୁ ନେବାକୁ ଚେଷ୍ଟା କଲେ । )

ଦ୍ୱିତୀୟ ସ୍ତ୍ରୀଲୋକ—ଆରେ ଆମ ସାଙ୍ଗରେ ଲାଗୁଛ କାହିଁକି ? ଆମେ ଆମ
ଖୁସିରେ ଅଫିସକୁ ଯିବୁ । ଆମକୁ ଏମିତି ଠେଲାପେଲା କରୁଛ
କାହିଁକି ?

ପ୍ରଥମ ସ୍ତ୍ରୀଲୋକ—ଓ ଗଡ୍ ! ଆଇ ଉଇଲ ନେଭର ଭିଜିଟ୍ ଦିସ୍ ଟେମ୍ପଲ
ଏଗେନ୍ । ଲେଟସ୍ ଗୋ ଆୱେ, ମିସେସ୍ ଦାସ ।

ଦ୍ୱିତୀୟ ସ୍ତ୍ରୀଲୋକ—କିନ୍ତୁ ଏମାନଙ୍କ ଇଚ୍ଛା ଅନୁସାରେ କାହିଁକି ?

ଦ୍ୱିତୀୟ ପଣ୍ଡା—ଆମ ଇଚ୍ଛା ଅନୁସାରେ ନାହିଁ ତ ତୋ ଘଇତାର ଇଚ୍ଛା
ଅନୁସାରେ ? ଟେକି ନିଅ ଏ ଦି' ଜଣଙ୍କୁ ସେଷ ଘରକୁ । ତାପରେ
ଜାଣିବେ ଏକୁଟିଆ ମାଇପି ହୋଇ ମନ୍ଦିର ଆସିଲେ କଣ ଫଳ
ମିଳେ ।

( ପଣ୍ଡାମାନେ ଠେଲିଠେଲି ସେହି ଦୁଇଜଣ ସ୍ତ୍ରୀଲୋକଙ୍କୁ
ନେଇଗଲେ । )

ଚୈତନ୍ୟ ବସନଧାରୀ—( ପୁଣି ଉଭାହୋଇ କହିଲେ )—ଏମିତି ନିତିଦିନ
ଅନେକ ଘଟଣା ଘଟୁଛି । କେବଳ ପ୍ରଚାର ହେଉନି ବୋଲି
ଲୋକଙ୍କ ଆଖିରେ ପଡ଼ୁନି । ହିସାବ ରଖିଛ ତୁମେ ? ତୁମର
ସେବକମାନଙ୍କ ଉତ୍ପୀଡ଼ନର ଆଉ ଏକ ନମୁନା ଦେଖିବ ?
ଦେଖ ।

( ମଞ୍ଚରେ ଦେଖାଗଲା ଦଳେ ପଶ୍ଚିମ ଓଡ଼ିଶାର ଯାତ୍ରୀଙ୍କ
ସହିତ ଜଣେ ଗୁମାସ୍ତାର କଥୋପକଥନ । )

ଗୁମାସ୍ତା—ଜଣକୁ ପଚୃଶ ଟଙ୍କା ଲେଖାଏଁ ପଡ଼ିବ । ତେବେ ଯାଇ ପୂଜା ଦର୍ଶନ କରାଇ ଦେବ ।

ଭୁଲ୍‌କୁ—ମୁଇଁ ତ ଦଶ୍ ଟଙ୍କାରୁ ଆଉ ପଏସେ ବି ଅଧିକା ନାଇଁ ଦେଇ ପାରେଁ ।

ଆଉ ଜଣେ ଯାତ୍ରୀ—ଦେଖ୍ ଭୁଲ୍‌କୁ, ଏନ୍ତା ଏଣ୍ଡ୍ର ଜିଦିଆ ନାଇଁ ହୁଅନ୍ । ଦେଇଦେ ପଚୃଶ ଟଙ୍କା ।

ଭୁଲ୍‌କୁ—ଏ ବୁଆ ! କେନୁ ପାଏମି ଯେ ଦେମି ? ସବୁ ବଛର୍ ତ ପାଁଚ୍ ଦଶ୍ ଟଙ୍କା ଦେଲେ ଚଲୁଥିଲା, ଏସୁର୍ ପଚୃଶ ଟଙ୍କା କାହିଁ ଲଗି ଦରକାର୍ ପଡ଼ିଲା ?

ଗୁମାସ୍ତା—ଦେଖ୍ ଭାଇ, ତୋ ସାଙ୍ଗରେ ମୁଁ ଆଉ ଯୁକ୍ତି କରିପାରିବ ନାହିଁ । ଭଲରେ କହୁଚ୍ଛି ପଚୃଶ ଟଙ୍କା ଥୋ—ନ ହେଲେ ନର୍କରେ ପଡ଼ିବୁ ।

ଜଣେ ଯାତ୍ରୀ—ଦେଖ୍ ବୋ ଭୁଲ୍‌କୁ ! ତୋର୍ ଲଗି ଆମର୍ ବିଳମ୍ ହେଉଛେ । ନରକ୍ ନ ପଡ଼୍‌ବା ଠାନୁ ପଚୃଶ୍ ଟଙ୍କା ତୋର୍ ବଡ଼୍ ହେଇଗଲା ? ଗୁମାସ୍ତା ମହାପ୍ରଭୁ କହୁରନ୍ ଯେତେବେଳେ ଦେଇଦେ ।

ଭୁଲ୍‌କୁ—ମୁଇଁ ତ ବୁଆ ନାଇଁ ଦେଇପାରେଁ । ତୁମେମାନେ ଏତାଙ୍କର ସଙ୍ଗେ ଯା । ମୁଇଁ ମୋର୍ ଅଲ୍‌ଗା ଯିମି । ମାଫି ଦର୍ଶନ କର୍‌ମି ।

ଗୁମାସ୍ତା—ସ୍ୱାପୋ ଜଙ୍ଗଲି ! ମନେ ମନେ ଭାରି ଗୃଲାଖି ଦେଖଉଚ୍ଛୁ ! ଡେଉରୁ ତୋର ସବୁ ଜିନିଷ ଉଠେଇ ନେବ ଯେ ଜାଣିବୁ । ଏଠୁ ଧକ୍‌କା ଦେଇ ନିକାଲି ଦେବ । ମାତ୍ର ଦର୍ଶନ୍ କରିବାର ମଜା ବାହାରି ଯିବ ।

ଦୁଇ ତିନିଜଣ ଯାତ୍ରୀ—ଦେଇ ଦେ ବୋ ଭୁଲ୍‌କୁ । ଅମ୍‌କୁ ଆଉର୍ ନାଇଁ ସାଧ୍ । ଗୁମାସ୍ତା ମହାରାଜ୍ ଏନ୍ତା ଅଏନ୍ ଲୋକ୍ ଆଉର୍ ଭୂଲି ତାଙ୍କର୍ କଥା ନାଇଁ ମାନ୍‌ବାର୍ ?

ଭୁଲ୍‌କୁ—ମୋର୍ ସାଙ୍ଗେ ନାହିଁ ଲଗ ଭାଇମାନେ । ମୋତେ ମୋର୍ ମାର୍ଗେ ଯାଇଦିଅ ।

ଗୁମାସ୍ତା—ତୋ ମାର୍ଗେ ଯିବୁ—ନା ? ସ୍ଥାନପା ଚାଲ୍ ତୋର ମାର୍ଗେ । (ଏତକ କହି ଧକ୍‌କା ଦେଇ ତାକୁ ବାହାରକୁ ବାହାର କରିଦେଲା । ) ଦେଖ ହୋ କମିତି ଅଭଦ୍ର ଲୋକଟା । ଚାଲ ଭାଇମାନେ ମୁଁ ତମମାନଙ୍କୁ ସବୁ ଠାକୁର ଠାକୁରାଣୀ ଦର୍ଶନ କରାଇ ଦେବି ।

( ସମସ୍ତେ ଚାଲିଗଲେ, ପୁଣି ଗୈରିକବସନଧାରୀ ବାହାରମାନ ହେଲେ । )

ଗୈରିକ ବସନଧାରୀ—ଏମିତି ଆହୁରି ଅନେକ ଘଟଣା ଦେଖିବ ରମାକାନ୍ତ ବାବୁ ? ପ୍ରତିଦିନ ଏମିତି ଘଟଣା ବହୁ ମାତ୍ରାରେ ଘଟୁଛି ମନ୍ଦିର ଭିତରେ, ବାହାରେ, ଚତୁର୍ଦ୍ଦିଗରେ । ତୁମେ ପରା ମୁକ୍ତିମଣ୍ଡପର କାରପଟଦାର୍ ! ତୁମର ସମ୍ମତିରେ ଏସବୁ ଘଟୁଛି ନିଶ୍ଚୟ !

ରମାକାନ୍ତ—( ନିଦ୍ରିତ ଅବସ୍ଥାରେ )—ନା ନା—ଏସବୁ ମିଛ । ଏସବୁ ଷଡ଼ଯନ୍ତ୍ର ।

ଗୈରିକ ବସନଧାରୀ—( ଅଟ୍ଟହାସ୍ୟ କରି )—ବିଶ୍ୱାସ ହେଉନି । ଆଜିଠୁ ସାବଧାନ ହୁଅ । ନ ହେଲେ ଆଉଥରେ କଳାପାହାଡ଼ ଓ ଆଉରଙ୍ଗଜେବ ଆସି ଏ ଦେଉଳକୁ ଭାଙ୍ଗି ଚୁର୍‌ମାର କରିଦେବେ ଆଉ ତୁମର ଧର୍ମ ଓ ସଂସ୍କୃତି ରସାତଳକୁ ଚାଲିଯିବ ।

[ ଗୈରିକ ବସନଧାରୀ ଉଭେଇ ଗଲେ । ରମାକାନ୍ତ ବାବୁ ନିଦ୍ରିତ ଅବସ୍ଥାରେ ଅସ୍ତବ୍ୟସ୍ତ ହେଲେ । ବିଭିନ୍ନ ରଙ୍ଗର ତରଙ୍ଗାୟିତ ଆଲୋକ ରମାକାନ୍ତ ବାବୁଙ୍କ ମୁଣ୍ଡ ଉପରେ ପୁଣି ଚାଲିଗଲା । ସ୍ୱପ୍ନାବେଶରେ ସେ ଦେଖିଲେ ପ୍ରଥମେ କଳାପାହାଡ଼କୁ । ]

କଳାପାହାଡ଼—( ଅଟ୍ଟହାସ୍ୟ କରି ) ମୁଁ କଳାପାହାଡ଼ । ମୋତେ ଚିହ୍ନି ପାରୁନୁ ? ଦିନେ ତୋର ପ୍ରିୟ ଜଗନ୍ନାଥଙ୍କୁ ଜାଳପୋଡ଼ ପାଉଁଶ କରି ଦେଇଥିଲି—ତୋର ମନେନାହିଁ ? ମୋତେ କେମିତି ଅପମାନ

ଦେଇଥିଲୁ, ସେଇଟା ମନେଥିବ ନିଶ୍ଚୟ ! ସେଇଠୁଁ କିଛି ଶିକ୍ଷା ପାଇଲୁ ନାହିଁ ? ଆଜି ବି ଅଗଣିତ ଜଗନ୍ନାଥ ଦର୍ଶନାଭିଳାଷୀ ଭକ୍ତଙ୍କୁ ଅପମାନିତ କରୁଛୁ, ନା ? ମନେ ରଖ, ମୋ ଭଳିଆ ଅନେକ କଳାପାହାଡ଼ ବାହାରି ଆଜି କଳେ ବଳେ କୌଶଳେ ତୁମର ସମସ୍ତ ମନ୍ଦିର ଧ୍ୱଂସ କରିବେ । ଖବରଦାର୍, ହୋସିଆର୍ ।

( କଳାପାହାଡ଼ ଉଭେଇଗଲା । ତା' ପରେ ଉଭା ହେଲେ ସମ୍ରାଟ ଆଉରଙ୍ଗଜେବ୍ । )

ଆଉରଙ୍ଗଜେବ୍—( ଗୋଟିଏ କୁଟିଳ ହସ ହସି )—ମୋତେ ଚିହ୍ନି ପାରୁଛୁରେ କାଫେର୍ ? ମୁଁ ସାହାନ୍‌ସାହା ଆଉରଙ୍ଗଜେବ୍ । ଦେଖୁଛୁ, ମୋର ସ୍ୱପ୍ନ କିମିତି ଧୀରେ ଧୀରେ ବାସ୍ତବରେ ପରିଣତ ହେଉଛି ! ମୋର ଅନୁଚରମାନେ କେମିତି ତୋର ଧର୍ମ ଓ ସଂସ୍କୃତିକୁ ସଙ୍କୁଚିତ କରୁଛନ୍ତି । ଦେଖିପାରୁଛୁ ବେକୁଫ୍ ? ତେଗ୍ ବାହାଦୁରକୁ ଧର୍ମାନ୍ତକରଣ କରାଇ ପାରିଲି ନାହିଁ ···

—ପୂର୍ବ ଦୃଶ୍ୟ—

[ ଚର—ତେଗ୍ ବାହାଦୁର ତାର ଜିଦ୍ ଛାଡ଼ୁନାହିଁ ଜାହାଁପନା ।

ଆଉରଙ୍ଗଜେବ—ଧର୍ମ ତ୍ୟାଗ କରିବ ନାହିଁ ସେଇ କାଫେର୍ ? ଏତେ ଆସ୍ପର୍ଦ୍ଧା ତାର ! ଜୀବନ ପ୍ରତି ମମତା ନାହିଁ ତାର !

ଚର—ସେ ତାର ରକ୍ତ ବଦଳରେ ଧର୍ମକୁ ରକ୍ଷା କରିବାକୁ ପ୍ରସ୍ତୁତ ଜାହାଁପନା ।

ଆଉରଙ୍ଗଜେବ୍—ଅସହ୍ୟ । ମୋର ଧର୍ମପ୍ରୀତି ଠାରୁ ତାର ଧର୍ମପ୍ରୀତି ଏତେ ବେଶି ? ନା ନା—ତାକୁ ଖତମ୍ କରିବାକୁ ହେବ । ଯାଅ । ଜଲ୍ଲାଦ ହାତରେ ଏହି ମୁହୂର୍ତ୍ତରେ ତାର ମୁଣ୍ଡକାଟ କର । ]

( କରୁଣ ରାଗିଣୀରେ ବାୟୁମଣ୍ଡଳ ଝଂକୃତ ହୋଇ ଉଠିଲା । )

ଆଉରଙ୍ଗଜେବ୍—କିନ୍ତୁ ସେଥିରେ ମୋର ଆତ୍ମା ଶାନ୍ତ ହେଲନାହିଁ । ଯଦି ତାହାର ଧର୍ମାନ୍ତକରଣ କରାଇ ପାରିଥାନ୍ତି, ଆଜ ହୁଏତ ଭାରତର ଇତିହାସ ଅଲଗା ହୋଇଯାଇଥାନ୍ତା । ତଥାପି ମୁଁ ମୋର ବ୍ୟୁହ ରଚନା କରି ଚାଲିଲି । ଆଜ ମୋର ଅନୁଚରମାନେ ଗୁରୁ ଗୋବିନ୍ଦ ସିଂହଙ୍କ ଅନୁଚର ବେଶ ସାଜି ଭାରତରେ କିମିତି ଆତଙ୍କରାଜ ସୃଷ୍ଟି କରୁଛନ୍ତି ଦେଖୁଛୁ !! ହନେ ମୋର ପ୍ରିୟ ଅନୁଚର ମହମ୍ମଦ ଅଲ୍ଲୀ ଜିନ୍ନା 'ଦୁଇ ଧର୍ମ—ଦୁଇ ଦେଶ' ନୀତିର ପ୍ରଚାର କରି ସତ୍ଲେଜ୍ ନଦୀର ରଙ୍ଗହୀନ ଜଳକୁ ବେଧର୍ମୀ ମାନଙ୍କ ରକ୍ତରେ ଲୋହିତ କରିଥିଲା ।

[ ଜିନ୍ନା—ସଂଖ୍ୟାଲଘୁ ସମ୍ପ୍ରଦାୟକୁ କାଫେରମାନଙ୍କ ଦୟାର ପାତ୍ର ଭାବରେ ଦେଖିବାକୁ ମୁଁ ଚାହେଁନା । ଆମ ସ୍ୱାର୍ଥ ଦୃଷ୍ଟିରୁ ଭାରତର ବିଭାଜନ ଅବଶ୍ୟମ୍ଭାବୀ । ନଚେତ୍ ଇଂରେଜମାନେ ଚାଲିଗଲେ ଆମେ ସବୁ ହୋଇଯିବୁ ଦ୍ୱିତୀୟ ଶ୍ରେଣୀର ନାଗରିକ । ଯାହା ମୋ ପାଇଁ ଗ୍ରହଣଯୋଗ୍ୟ ନୁହେଁ ।

—ପୂର୍ବ ଦୃଶ୍ୟ—

ଯେତେବେଳେ ଗାନ୍ଧିଜୀଙ୍କ କଣ୍ଠରେ ଶୁଣାଗଲା "ତୁମକୁ ମୋର ଏକାନ୍ତ ଅନୁରୋଧ ଜିନ୍ନା । ତୁମେ ବରଂ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ହୁଅ । ତୁମେ ଭାରତକୁ ଖଣ୍ଡ ବିଖଣ୍ଡ କର ନାହିଁ । ମୋ ପାଇଁ ହିନ୍ଦୁମାନେ ଯେତେ ପ୍ରିୟ, ମୁସଲମାନମାନେ ମଧ୍ୟ ସେତିକି ପ୍ରିୟ । ମୋତେ ତୁମେ ବିଶ୍ୱାସ କର ଜିନ୍ନା ।"

ଜିନ୍ନା—ସମସ୍ତେ ତ ମୋହନ ଦାସ କରମ୍‌ଚାନ୍ଦ ଗାନ୍ଧି ନୁହନ୍ତି । ମୁଁ କୋଟି କୋଟି ମୁସଲମାନଙ୍କ ଭାଗ୍ୟକୁ ନେଇ ଖେଳି ପାରିବି ନାହିଁ । ପାକିସ୍ଥାନ ନିଶ୍ଚୟ ହେବ । ଲଡ଼୍‌କେ ଲେଙ୍ଗେ ପାକିସ୍ଥାନ । ]

( ତାପରେ କରୁଣ ରାଗିଣୀ ସହିତ ଦେଖାଦେଲା ବିଭାଜନର କରୁଣ ଦୃଶ୍ୟ । )

ଆଓ୍ରଙ୍ଗଜେବ୍—ସେଦିନ ମୋର ଆତ୍ମା କିଛିଟା ଶାନ୍ତି ପାଇଥିଲା । ଆଜି ବି
ମୋର ଅନୁଚରମାନେ ପଞ୍ଜାବରେ ରକ୍ତର ହୋରି ଖେଳ ଖେଳି
ମୋତେ ଆନନ୍ଦରେ ବିଭୋର କରୁଛନ୍ତି ।

—ଭରତ—

ତୋର କାର୍ଯ୍ୟକଳାପରେ ବି ମୁଁ ସନ୍ତୁଷ୍ଟ । ମୁଁ ଆଉ ମୋର
ଅନୁଚରମାନେ ମନ୍ଦିର ବାହାରେ ନାରୀ ଧର୍ଷଣ କରୁଥିଲୁ ଏବଂ ତୁ
ଆଉ ତୋର ଅନୁଚରମାନେ ମନ୍ଦିର ଭିତରେ ବ୍ୟଭିଚାର କରୁଛ ।
ମୁଁ ମନ୍ଦିର ବାହାରେ ଜିଜିୟା କର ବସାଇଥିଲି । ତୁ ଓ ତୋର
ଅନୁଚରମାନେ ମନ୍ଦିର ଭିତରେ ଜିଜିୟା କର ବସେଇଛ ।
ମୁଁ ବେଧର୍ମୀମାନଙ୍କୁ ଜୋର୍ ଜବରଦସ୍ତ ଧର୍ମାନ୍ତରକରଣ କରାଉଥିଲି,
ତୁ ଓ ତୋର ଅନୁଚରମାନେ ଉତ୍ପୀଡ଼ନ ଜରିଆରେ ତୁମ ଧର୍ମକୁ
ସଙ୍କୁଚିତ କରୁଛ । ଦେଖିଲୁ ନାହିଁ ତୋର ବନ୍ଧୁମାନେ ହରିଜନ-
ମାନଙ୍କୁ ପୂଜା ଅର୍ଚ୍ଚନା କରିବାର ସୁଯୋଗ ନ ଦେବାରୁ ମୀନାକ୍ଷି-
ପୁରମ୍‌ରେ କ'ଣ ଘଟିଲା ।

—ପୂର୍ବ ଦୃଶ୍ୟ

[ ପୂଜକ—( ହରିଜନ ଭକ୍ତକୁ ଲକ୍ଷ୍ୟ କରି )—
ତୋର ଛୁଇ ପଡ଼ ମୋତେ ଅପବିତ୍ର କରି ଦେଇଛୁ ।
ତୁ ପୁଣି ଆସିଛୁ ମନ୍ଦିର ଭିତରେ ପୂଜା କରିବା ପାଇଁ ।
ତୁ ଚଣ୍ଡାଳ । ଭାଗ୍ ଏଇଠୁ ।

ହରିଜନ ଭକ୍ତ—ଭଗବାନଙ୍କ ଆଖିରେ ସମସ୍ତେ
ସମାନ । ମୁଁ ନିଶ୍ଚୟ ମନ୍ଦିର ଭିତରକୁ ପ୍ରବେଶ କରିବି ।

ପୂଜକ—( ଚିତ୍କାର କରି )—ଚାଲିଆସ ପୂଜକଗଣ ।
ଏ ଚଣ୍ଡାଳର ଆସ୍ପର୍ଦ୍ଧା ଦେଖ । ସେ ଜୋର୍ କରି
ମନ୍ଦିର ପ୍ରବେଶ କରିବାକୁ ଧମକ୍ ଦେଉଛି ।

( କେତେଜଣ ପୂଜକ ଜମି ଯାଇ ହରିଜନ ଭକ୍ତକୁ
ପ୍ରହାର କରି ତଳେ ପକାଇ ଦେଲେ । କିଛି ସମୟ
ପରେ ପୂଜକଗଣ ଚାଲିଗଲେ ଏବଂ ଆହତ ବ୍ୟାଘ୍ର ସମ
ହରିଜନ ଭକ୍ତ ଛିଡ଼ା ହେଲା । )

ହରିଜନ ଭକ୍ତ—ଏ ଅପମାନ ଅସହ୍ୟ । ମୁଁ ନୀଚ କୁଳରେ ଜନ୍ମ ହେଲି ବୋଲି ମନ୍ଦିର ପ୍ରବେଶ ଯଦି କରି ପାରିଲି ନାହିଁ, କି ପ୍ରୟୋଜନ ଅଛି ଏ ଧର୍ମର ? ମୁଁ ଧର୍ମ ତ୍ୟାଗ କରିବି ଏବଂ ସମଗ୍ର ମୀନାକ୍ଷିପୁରମ୍‌ର ହରିଜନଙ୍କୁ ମଧ୍ୟ ଧର୍ମ ତ୍ୟାଗ କରାଇବି । ]

ଆଉରଙ୍ଗଜେବ୍—ସେଦିନ ମୋର କି ଆନନ୍ଦ ! ତୋର ବନ୍ଧୁମାନେ ତ ମୋର ସଚ୍ଚା ଅନୁଚର । ସବୁ ଧର୍ମ, ସବୁ ଗୋଷ୍ଠୀ, ସବୁ ଭାଷା ଏବଂ ସବୁ ସ୍ତରରେ ମୋର ଅନୁଚରମାନେ ପୂରି ଯାଇଛନ୍ତି । ତୁ ମଧ୍ୟ ମୋର ଅନୁଚର ହୋଇ ଯା ନା ! ମୋ ପାଖରେ ଅନେକ ଉପସାଗରୀୟ ଅର୍ଥ ଅଛି । ମୁଁ ତୋତେ ବହୁ ମାତ୍ରାରେ ପୁରସ୍କୃତ କରିବି । ତୋତେ ବେଶି କିଛି କରିବାକୁ ପଡ଼ିବ ନାହିଁ । ତୁ ବେଶ୍ ତୋର ଧର୍ମର ଲଗାମ୍‌କୁ ଭଲ ଭାବରେ ଟାଣି ଥା ।

—ବିରତି—

ରମେଶ, ଆଜାଦ୍, ଜନ୍ ପ୍ରଭୃତି ମୋର ଅନୁଚର୍‌ମାନେ ତୋତେ ସାହାଯ୍ୟ କରିବେ । କିନ୍ତୁ ଖବର୍‌ଦାର୍—ପ୍ରଭୁଦତ୍ତ, ହାସିନା, ସଉକତ୍, ବଲବୀର ସିଂହ ଓ ପିଟର ମୋର ପରମ ଶତ୍ରୁ । ସେମାନେ ତୋର ବି ପରମ ଶତ୍ରୁ । ଧର୍ମ ନିରପେକ୍ଷତା ନାଁରେ ସେମାନେ ଲୋକଙ୍କୁ ଭୁଲ୍ ବାଟକୁ ନେଇଯିବାକୁ ଚାହୁଁଛନ୍ତି । ମୋର ଆଦର୍ଶର ଖିଲାଫ୍ କରୁଛନ୍ତି ସେମାନେ ।

( କ୍ଷଣିକ ବିରତି )

ମୋହନ ଦାସ କରମ୍‌ଚାନ୍ଦ ଗାନ୍ଧି ମୋର ଆଦର୍ଶର ଖିଲାଫ୍ କରି ସବୁ ଧର୍ମ ସବୁ ଗୋଷ୍ଠୀର ଲୋକଙ୍କୁ ଏକ କରିବାକୁ ବସିଥିଲା । ନୋଆଖାଲିରେ ମୁଁ ଯେଉଁ ବହ୍ନିଶିଖା ସୃଷ୍ଟି କରିଥିଲି, ତାକୁ ସେ ତା'ର ଅହିଂସାର ମନ୍ତ୍ରରେ ସଜାଡ଼ି ଦେଲା । ତେଣୁ ମୋର ଆଦର୍ଶକୁ ବଞ୍ଚେଇ ରଖିବା ପାଇଁ ମୋର ଅନୁଚର ନାଥୁରାମ ବିନାୟକ ଗଡ଼୍‌ସେ ଦ୍ୱାରା ତାକୁ ଗୁଳି କରି ହତ୍ୟା କରାଇଲି ।

[ ବନ୍ଧୁକ ଗୁଳିର ଶବ୍ଦ ଶୁଭିଲା । 'ହେ ରାମ' ଶବ୍ଦ ତା'ପରେ ଶୁଣାଗଲା ଅତି ଧୀର ଭାବରେ । ଏକ କରୁଣ ରାଗିଣୀରେ ବାୟୁମଣ୍ଡଳ ଝଙ୍କୃତ ହୋଇଗଲା । ]

ଇତିହାସ ଗବେଷଣା କଲେ ଗାନ୍ଧି ହତ୍ୟାରେ ମୋର ପ୍ରଚ୍ଛନ୍ନ ହାତର ଯଥେଷ୍ଟ ପ୍ରମାଣ ମିଳିବ । ମୋର ପ୍ରଭାବ ସୁଦୂର ପ୍ରସାରୀ । ତୋର ପୁଅ ପ୍ରଭୁଦତ୍ତର ଜୀବନ ଯଦି ତୋର ଅତିପ୍ରିୟ, ତାକୁ ତା ଆଦର୍ଶରୁ ଓହରି ଯିବାପାଇଁ କହ । ନ ହେଲେ ତାକୁ ମଧ୍ୟ ହତ୍ୟା କରିବି । ହତ୍ୟା କରିବି । ହତ୍ୟା କରିବି ।

( ଏହି କଥାଗୁଡ଼ିକ ବାୟୁମଣ୍ଡଳକୁ ପ୍ରକମ୍ପିତ କଲା । ଚିତ୍କାର କରି ଉଠି ପଡ଼ିଲେ ରମାକାନ୍ତ ବାବୁ । )

ରମାକାନ୍ତ—ନା ନା, ମୁଁ ତାହା ହେବାକୁ ଦେବି ନାହିଁ ।

( ମାୟାଦେବୀ ଧାଇଁ ଆସିଲେ । )

ମାୟା—( ଆଶ୍ଚର୍ଯ୍ୟ ହୋଇ ) କ'ଣ ହେବାକୁ ଦେବ ନାହିଁ ?

ରମାକାନ୍ତ—ପ୍ରଭୁଦତ୍ତକୁ ହାସିନା ସହିତ ବାହା ହେବାକୁ ଦେବି ନାହିଁ । ସେ ତାକୁ ହତ୍ୟା କରିବ । ( ଶଙ୍କିତ ହୋଇ କହିଲେ । )

ମାୟା—କିଏ ତାକୁ ହତ୍ୟା କରିବ ?

ରମାକାନ୍ତ—ଆଉରଙ୍ଗଜେବ୍ ହତ୍ୟା କରିବ ପ୍ରଭୁଦତ୍ତକୁ ।

ମାୟା—ତୁମେ ସ୍ୱପ୍ନ ଦେଖୁଛ ନା କଣ ? ଆଉରଙ୍ଗଜେବ୍ କେବଠୁ ମଲାଣି । ସେ ପୁଣି କେମିତି ହତ୍ୟା କରିବ ?

ରମାକାନ୍ତ—ନା ନା ମାୟା । ତାହା ମିଛ ହୋଇ ନ ପାରେ । ସେ କେତେ ସ୍ପଷ୍ଟ ଭାବରେ କେତେ କଥା କହିଗଲା । ଶେଷରେ ମୋତେ ତାଗିଦ୍ କରିଗଲା । ଯଦି ପ୍ରଭୁଦତ୍ତ ହାସିନାକୁ ବିବାହ କରେ, ତାକୁ ସେ ତାର ଅନୁଚରମାନଙ୍କ ଦ୍ୱାରା ହତ୍ୟା କରାଇବ ।

ମାୟା—ତୁମର ଭ୍ରମ ହେଉଛି । ତୁମେ ଟିକିଏ ବିଶ୍ରାମ ନିଅ । ମୁଁ କ୍ରମଣ୍ଡପର ନିଷ୍ପତ୍ତି ତୁମକୁ ନିଶ୍ଚିତଭାବରେ ବିବ୍ରତ କରୁଛି ।

ରମାକାନ୍ତ—ନା ନା ମାମ୍ମା, ମୁ କ୍ରମଣ୍ଡପର ନିଷ୍ପତ୍ତି ମୋତେ ବିବ୍ରତ କରି-ନାହିଁ । ମୁଁ ହିନ୍ଦୁ ମହାରଣା । ହିନ୍ଦୁଧର୍ମର ପରମ୍ପରାକୁ ରକ୍ଷା କରିବା ପାଇଁ ମୁଁ ଧର୍ମପଦକୁ ଜଳାଞ୍ଜଳି ଦେବାକୁ ପ୍ରସ୍ତୁତ ।

ମାମ୍ମା—ଯଦି ଜଳାଞ୍ଜଳି ଦେବାପାଇଁ ପ୍ରସ୍ତୁତ, ତେବେ ପୁଅ ପାଇଁ ଚିନ୍ତିତ କାହିଁକି ?

ରମାକାନ୍ତ—ଆରେ ହଁ ତ ! ତାହାହେଲେ ମୁଁ ଯାହା ଦେଖିଲି ତାହା କଣ ସ୍ୱପ୍ନ ? ନ ହେଲେ, ଆଉରଙ୍ଗଜେବ୍‌କୁ ତ ମୁଁ ଘୃଣାକରେଁ—ସେ ମୋତେ ତାର ବିଶ୍ୱସ୍ତ ଅନୁଚର ବୋଲି କେମିତି କହନ୍ତା ? ତାର ଦାଉରୁ ଆମର ଧର୍ମ ଓ ସଂସ୍କୃତିକୁ ରକ୍ଷା କରିବାକୁ ହେବ ।

ମାମ୍ମା—ତେବେ ପ୍ରଭୁଦତ୍ତର କଥା ଶୁଣ । ହାସିନାକୁ ଖୁସିମନରେ ଏଘରକୁ ବୋହୂ କରିଆଣ । ତାହାହେଲେ ତୁମ ମୁଣ୍ଡରୁ ଆଉରଙ୍ଗଜେବ୍‌ର ଭୂତ ଛାଡ଼ିଯିବ । (ଟିକିଏ ଅଟକି) ଗୋଟିଏ କଥା କହିବି, ରାଗିବ ନାହିଁଟି ? ଆଜି ମୁଁ ସ୍ୱପ୍ନରେ ଦେଖିଲି ନବବଧୂ ବେଶରେ ହାସିନା ଆମ ଘରକୁ ଆସିଛି । କେଡ଼େ ସୁନ୍ଦର ଦିଶୁଥିଲା ସେ ନବବଧୂ ବେଶରେ ।

ରମାକାନ୍ତ—ବନ୍ଦକର ତୁମର ବକ୍ତବ୍ୟ । ମୁଁ ବି ସେମିତି ଗୋଟିଏ ବାଜେ ସ୍ୱପ୍ନ ଦେଖିଛି । ସେହି ମ୍ଳେଚ୍ଛ ମୁସଲମାନ ଝିଅଟା ସଙ୍ଗରେ ପୁଣି ମୋର ପୁଅର ବାହାଘର ହେବ ? ଅସମ୍ଭବ ।

ମାମ୍ମା—ସେ ମ୍ଳେଚ୍ଛ କାହିଁକି ହୁଅନ୍ତା ନା ? ସେ କେତେ ସୁଗୁଣର, କେଡ଼େ ସୁନ୍ଦର, କେଡ଼େ ଭଦ୍ର । ସେ ତ ମୋ ମନକୁ କିଣି ନେଇଛି ।

ରମାକାନ୍ତ—ତୁମେ ପୁଅର ଅମଙ୍ଗଳ ଚାହୁଁଛ ମାମ୍ମା । ହାସିନାକୁ ବିବାହ କଲେ ପ୍ରଭୁଦତ୍ତ କେଉଁ କୁଳର ହେବ ନାହିଁ । ଆମ ସମାଜ ତାକୁ ବାସନ୍ଦ କରିବ । ହାସିନାର ସମାଜ ବି ତାକୁ ବାସନ୍ଦ କରିବ । ଆଉ ଶେଷରେ ଆଉରଙ୍ଗଜେବ୍ ତାକୁ ହତ୍ୟା କରିବ । ନା ନା ମୁଁ ତାହା ହେବାକୁ ଦେବିନାହିଁ—ତାହା ହେବାକୁ ଦେବିନାହିଁ ।

—ଦୃଶ୍ୟାନ୍ତର—

[ ମଞ୍ଚ ଅନ୍ଧକାର ହୋଇଗଲା । ମଞ୍ଚ ଆଲୋକିତ ହେଲାବେଳକୁ ଦେଖାଗଲା ନଜରୁଲ୍ ବସିଥାନ୍ତି । ପାଖରେ ତାଙ୍କର ନସିମାବାନୁ । ]

ନଜରୁଲ୍—ନସିମା ! ମୋର ଜଗନ୍ନାଥ ଦର୍ଶନ ପିପାସା ମେଣ୍ଟି ପାରିବ କି ନାହିଁ ମୁଁ ଜାଣି ପାରୁନ ।

ନସିମା—ତୁମେ ମୁସଲମାନ ଘରେ ଜନ୍ମ ନେଇ ଜଗନ୍ନାଥଙ୍କ ପାଇଁ ଏତେ ପାଗଳ ?

ନଜରୁଲ୍—ସେ ମୋର ଆତ୍ମା । ସେ ମୋର ସବୁକିଛୁ ।

ନସିମା—ତାହାହେଲେ ଏତେଦିନ ତାଙ୍କୁ ମନରେ ଯେମିତି ଧାରଣ କରିଛ, ସେମିତି କରିଥାଅ ।

ନଜରୁଲ୍—ଅବଶ୍ୟ ସେମିତି କରିବାକୁ ହେବ । ଏ ବିଷୟ ଚିନ୍ତାକଲାବେଳେ ପ୍ରଭୁଦତ୍ତ ଓ ହାସିନାର କଥା ମନେପଡ଼େ । ଯୁବକ ଯୁବତୀ ଆଧୁନିକ ଆମୋଦ ପ୍ରମୋଦରେ ମାତିଥିବା ସମୟରେ, ଦେଖୁଛ ସେମାନଙ୍କର କର୍ତ୍ତବ୍ୟ ନିଷ୍ଠା ? ପ୍ରଭୁଦତ୍ତର ମନୋବଳ ଦେଖିଲେ ବେଳେବେଳେ ମନରେ ଗର୍ବ ଆସେ ? ସବୁ ମଣିଷ ସମାନ ବୋଲି ଜାଗରଣରେ, ଶୟନରେ ସ୍ୱପ୍ନରେ ଭାବିବା ଶ୍ରେଷ୍ଠ କଥା ନୁହେଁ । ନିଜ ଆଦର୍ଶ ପାଇଁ ସେ ନିଜ ଜୀବନକୁ ବିପନ୍ନ କରିଛି ।

ନସିମା—ରମାକାନ୍ତବାବୁ ବହୁତ ପ୍ରତିପତ୍ତିଶାଳୀ ବ୍ୟକ୍ତି । ଆଉ ଏକ୍‌ଜିଦିଆ ମଧ୍ୟ । ତାଙ୍କୁ ରଗେଇଲେ ସେ ପ୍ରଭୁଦତ୍ତର କ୍ଷତି କରି ଦେଇ ପାରନ୍ତି । ତାକୁ ତା ବାପାଙ୍କ ପାଖକୁ ପଠେଇଦେଲେ ଭଲ ହୁଅନ୍ତା ।

ନଜରୁଲ୍—ଏଥର ସେ ଆସୁ, ମୁଁ ତାକୁ ବୁଝେଇବାକୁ ଚେଷ୍ଟା କରିବି ।

ନସିମା—ଏଇ ତ ପ୍ରଭୁଦତ୍ତ । ( ପ୍ରଭୁଦତ୍ତର ପ୍ରବେଶ )

ନଜରୁଲ୍—ମୋର ଗୋଟିଏ କଥା ରଖିବ ବାବା ପ୍ରଭୁଦତ୍ତ ?

ପ୍ରଭୁ—କହନ୍ତୁ ମଉସା ।

ନଜରୁଲ୍—(ଚିକିଏ ଭାବ)—ମୋ କଥା ମାନ ପ୍ରଭୁଦତ୍ତ । ତୁମର ବିରାଟ ଭବିଷ୍ୟତକୁ ବିଚାର କରି ତୁମେ ନିଜର କର୍ମପନ୍ଥା ସ୍ଥିରକର । ପିତାଙ୍କ ଅବାଧ୍ୟ ହୋଇ ଦେଶ ସେବାରେ ମାତିଲେ, ତୁମର ଅପଯଶ ହୋଇପାରେ । ତୁମେ ତୁମ ବାପାଙ୍କ ପାଖକୁ ଫେରିଯାଅ ।

ପ୍ରଭୁ—ଏ କ'ଣ କହୁଛନ୍ତି ମଉସା ? ଯେଉଁ ଆଦର୍ଶକୁ ନେଇ ମୁଁ ବଞ୍ଚିବାକୁ ଚାହେଁ, ତାକୁ ମୁଁ ପରିତ୍ୟାଗ କରିବି କିପରି ? ମଣିଷ ମଣିଷ ଭିତରେ ଯେଉଁ ଧର୍ମ ଓ ସଂସ୍କୃତି ପାଚେରି ଠିଆ କରାଏ, ମୁଁ ସେହି ଧର୍ମ ଓ ସଂସ୍କୃତିକୁ ବିଶ୍ୱାସ କରେନା । ମୋର ସ୍ୱପ୍ନ ଏକ ଭେଦଭାବ ଶୂନ୍ୟ ସମାଜ । ଆପଣ ମୋତେ ନିରୁତ୍ସାହିତ କରନ୍ତୁ ନାହିଁ, ମଉସା ।

ନସିମ୍—ତୁମେ ଠିକ୍ କହୁଛ ପୁଅ; କିନ୍ତୁ ଯେଉଁ ଗୁଣ୍ଡାଶ୍ରେଣୀର ଲୋକେ ତୁମର ଶତ୍ରୁତା କରୁଛନ୍ତି ତୁମେ ତାହାର ମୁକାବିଲା କରିପାରିବ ?

ପ୍ରଭୁ—ନିଶ୍ଚୟ ପାରିବି ମାଉସୀ । ହାସିନା, ସଉକତ୍, ପିଟର, ବଲବୀର ଆଉ ଅନେକ ବନ୍ଧୁ ମୋ ସହିତ ଯୋଗଦାନ କରିଛନ୍ତି । ଆମର ମିଳିତ ଉଦ୍ୟମରେ ଅହିଂସା ଉପାୟରେ ସବୁ ସମ୍ଭବ ମାଉସୀ ।

ନସିମ୍—ସବୁ ଆଲ୍ଲାଙ୍କ ମରଜି ।

ନଜରୁଲ୍—ତୁମେ, ହାସିନା ଆଉ ତୁମର ବନ୍ଧୁମାନେ କେତେ ଅସୁବିଧାର ସମ୍ମୁଖୀନ ହେଉଛ ଏଥିପାଇଁ ।

( ସେତିକିବେଳେ ହାସିନା, ସଉକତ, ପିଟର, ବଲବୀରର ପ୍ରବେଶ )

ହାସିନା—(ପ୍ରବେଶ କରୁଁ କରୁଁ)—ମୋର କିଛି ଅସୁବିଧା ହେଉନାହିଁ ଆବ୍‌ବାଜାନ୍ । ଗୁଡ଼ାଏ ଅନ୍ଧ ପରମ୍ପରାରେ ନିଜକୁ ବାନ୍ଧିରଖି ମୁଁ ମୋ ଜୀବନକୁ ନଷ୍ଟ କରିବାକୁ ଚାହେଁ ନା । ମାନବ ଧର୍ମର ପ୍ରଚାର ପାଇଁ ମୁଁ ସବୁକିଛି ବଳିଦାନ ଦେବା ପାଇଁ ପ୍ରସ୍ତୁତ । ପ୍ରଭୁଦତ୍ତ

ଓ ତାର ବନ୍ଧୁମାନେ (ସମସ୍ୱରରେ)—ଆମେ ପ୍ରସ୍ତୁତ, ଆମେ ପ୍ରସ୍ତୁତ, ଆମେ ପ୍ରସ୍ତୁତ ।

[ ତରୁଣ ତରୁଣୀ ବନ୍ଧୁଗଣ ଏହା କହି ହାତମୁଠାକୁ ଟାଣକରି ରଙ୍ଗମଞ୍ଚର ମଧ୍ୟଭାଗକୁ ଚାଲି ଆସନ୍ତି । ସେମାନଙ୍କ ସହିତ ଆହୁରି ଅନେକ ସ୍ୱର ମିଶିଯାଏ । ସେମାନଙ୍କ ମୁଖମଣ୍ଡଳରେ ସ୍ପଟ୍‌ଲାଇଟ୍ ପଡ଼ି ସେମାନଙ୍କ ମୁଖମଣ୍ଡଳକୁ ଦେଦୀପ୍ୟମାନ କରେ । ପରେ ଧୀରେ ଧୀରେ ମଞ୍ଚ ଅନ୍ଧକାର ହୋଇଯାଏ । ]

—ଦୃଶ୍ୟାନ୍ତର—

[ ମଞ୍ଚ ଆଲୋକିତ ହେବା ସମୟରେ ସିଂହଦ୍ୱାର ଦେଖାଯାଏ । ପ୍ରଭୁଦତ୍ତ ଭାଷଣ ଦେଉଥାଏ । ଅନ୍ୟମାନେ ଶୁଣୁଥାନ୍ତି । ]

ପ୍ରଭୁଦତ୍ତ—ମାନବଧର୍ମ ଆଜି ସମସ୍ତଙ୍କର ଧର୍ମ । ଜଗତର ନାଥ ଜଗନ୍ନାଥ ଜଗତର ଠାକୁର—ସମସ୍ତଙ୍କର ଠାକୁର । କେତେଗୋଟି କୁସଂସ୍କାରଗ୍ରସ୍ତ ମଣିଷ ସନାତନ ଧର୍ମର ଶ୍ୱାସରୁଦ୍ଧ କରି ଆଜି ଜଗନ୍ନାଥଙ୍କୁ ହତ୍ୟା କରିବାକୁ ବସିଛନ୍ତି । ଯେଉଁ ପ୍ରଭୁ ସମସ୍ତଙ୍କର ଠାକୁର ତାଙ୍କୁ ଆଜି ପିଞ୍ଜରାରେ ବନ୍ଦକରି ବ୍ୟବସାୟ କରୁଛନ୍ତି ସେମାନେ । କୃଷ୍ଣଚେତନା ସମିତିର ସଭ୍ୟମାନଙ୍କୁ ସେମାନେ ମନ୍ଦିର ଭିତରକୁ ପ୍ରବେଶ କରିବାକୁ ବାରଣ କରୁଛନ୍ତି । କିଏ ଦେଇଛି ସେମାନଙ୍କୁ ଏ ଅଧିକାର ? କେଉଁ ଧର୍ମଗ୍ରନ୍ଥ ? କେଉଁ ସରକାର ସେମାନଙ୍କୁ ଦେଇଛି ଅନଧିକାର ଚର୍ଚ୍ଚା କରିବାର କ୍ଷମତା ? ଯେଉଁ ଆଗ୍ରହୀ ବନ୍ଧୁମାନେ ସନାତନ ଧର୍ମ ଦର୍ଶନରେ ବିଶ୍ୱାସ କରି ବିଶ୍ୱ-ଭ୍ରାତୃତ୍ୱ ଆଣିବାକୁ ପ୍ରୟାସ କରୁଛନ୍ତି, ମାନବ ଧର୍ମ ଯେଉଁମାନଙ୍କର ଆଦର୍ଶର ମୂଳପିଣ୍ଡ, ସେମାନଙ୍କ ପାଇଁ ଓ୍ୟାନ୍‌ଓ୍ୱେ ଟ୍ରାଫିକ୍‌ର ପ୍ରତିବନ୍ଧକ ସୃଷ୍ଟି କରିଛନ୍ତି ଏହି ସ୍ୱାର୍ଥାନ୍ୱେଷୀ ସେବକଦଳ । ଆଜି ସେହି ଓ୍ୟାନ୍‌ଓ୍ୱେ ଟ୍ରାଫିକ୍‌କୁ ଭାଙ୍ଗି ଚୁରମାର କରିବାକୁ ହେବ । ପାରିବ ବନ୍ଧୁମାନେ ?

ସମସ୍ତେ—ହଁ, ପାରିବୁ ।

ପ୍ରଭୁଦତ୍ତ—ସେମାନେ ଯେଉଁକି ହିଂସାଭାବ ପ୍ରଦର୍ଶନ କଲେ ମଧ୍ୟ ଓ୍ୱାନ୍-ଓ୍ୱେ ଟ୍ରାଫିକ୍ ଆଇନ୍ ଭଙ୍ଗ କରିବା ପାଇଁ ଅହିଂସ ଉପାୟ ଅବଲମ୍ବନ କରି ପାରିବ ?

ସମସ୍ତେ—ହଁ ପାରିବୁ ।

ହାସିନା—ଆମ ସମାଜରେ ନାରୀଜାତି ଉପରେ ଯେଉଁ ନିର୍ଯ୍ୟାତନା ଦେଖା ଦେଇଛି, ତାକୁ ମଧ୍ୟ ଦୂର କରିବାକୁ ହେବ । ପୁରୁଷ ଓ ନାରୀ ଉଭୟେ ସମାନ । ମଣିଷ ମଣିଷ ଭିତରେ ପ୍ରଭେଦ ନାହିଁ । ନାରୀ-ଜାତି ମଧ୍ୟ ଆଜି ଜାଗି ଉଠିଛି ମାନବଧର୍ମର ପ୍ରସାର କରିବା ପାଇଁ । ଆଗେଇ ଆସ ଭଉଣୀମାନେ ।

ନାରୀମାନେ (ସମୂହ କଣ୍ଠରେ)—ଆମେ ପ୍ରସ୍ତୁତ, ଆମେ ପ୍ରସ୍ତୁତ ।

(ଏପରି ସମୟରେ ଗୁଣ୍ଡାମାନଙ୍କ ସହିତ ରମେଶ ଓ ତାର ବନ୍ଧୁମାନେ ପ୍ରବେଶ କଲେ । )

ରମେଶ—ବାଃ ବାଃ, ଚମତ୍କାର ! ଲେକ୍‌ଚରବାଲା ସାଙ୍ଗରେ ଲେକ୍‌ଚର-ବାଲି—ବହୁତ ଖୁବ୍ । ଭଲରେ ଭଲରେ ଘରକୁ ଚାଲିଯା କହୁଛି ।

ପ୍ରଭୁଦତ୍ତ—ଭାଇ ରମେଶ, ଆମେ ତୁମ କାମରେ କେବେ ହସ୍ତକ୍ଷେପ କରୁ-ନାହୁଁ । ତୁମେ ଆମ କାମରେ କାହିଁକି ବାଧା ଦେଉଛ ?

ରମେଶ—ବାଧା ? ଅଲ୍‌ବତ୍ ବାଧା ଦେବୁ ଆମେ । ତୋର ଦୋସ୍ତ-ମାନଙ୍କ ସହିତ ତୁ ମିଶି ଆମ ଧର୍ମର ପରମ୍ପରାକୁ ଭାଙ୍ଗିବାକୁ ଯାଉଛୁ—ଆମେ ଛାଡ଼ିଦେବୁ ?

ଆଜାଦ୍—କେଁଟା ଯାଓ ଓ୍ୱାପସ୍ ଘର୍, ଔଅର ଛୋଡ଼ ଦୋ ମେରୀ ହସିନାକୋ । ନହିଁ ତୋ ତେରି ଖୁନ୍ ଚୁସ୍‌ଲୁଙ୍ଗା ।

ପ୍ରଭୁ—ମୋତେ ତୁମେ ଧମକେଇ ପାରିବ ନାହିଁ ଭାଇ ଆଜାଦ୍ । ଅନେକ ଥର ଚେଷ୍ଟା କରି ଫେଲ୍ ମାରିଛ ।

ବଳରାମ—(ଆଜାଦ୍‌କୁ) ଦେଖେଁ କେମିତି ଝିପଦେବୁ ମୋର ଦୋସ୍ତ ଦେହରେ । (ଏହାକହି ଆଗେଇଗଲା । )

ପ୍ରଭୁ—ଆମେ ଶପଥ ନେଇଛୁ ସମସ୍ତ ପ୍ରକୋପନ ସତ୍ତ୍ୱେ ଆମେ ଅହିଂସ ରହିବୁ ; କିନ୍ତୁ ଅଟଳ ରହିବୁ । ଗାନ୍ଧିମାର୍ଗ ପାଳନ କରି ଆମେ ଆମର କାମ ହାସଲ କରିବୁ ।

ରମେଶ—ଗାନ୍ଧି-ମାର୍ଗ ? ଆରେ ମାଡ଼କୁ ମହାଦେବ ବି ଡରନ୍ତି । ଆଜ ଆଉ ଦୟା ମାୟା ନାହିଁ । (ଗୁଣ୍ଡାମାନଙ୍କୁ ଲକ୍ଷ୍ୟକରି) ଲଗାଓ ଠେଙ୍ଗା ଆଉ କର ସାବାଡ଼୍ ।

[ ଗୁଣ୍ଡାମାନେ ପ୍ରଭୁଦତ୍ତ ଓ ବନ୍ଧୁମାନଙ୍କୁ ଠେଙ୍ଗାରେ ପ୍ରହାର ଦେବାକୁ ଆରମ୍ଭ କଲେ । ସେମାନେ କିନ୍ତୁ ଚୁପ୍-ଚୁପ୍ ରହିଲେ; କିନ୍ତୁ ଜନଗହଳି ବଢ଼ିବାକୁ ଲାଗିଲା । ଏହି ବିରାଟ ଜନସମୁଦ୍ରକୁ ଦେଖି ପୃଷ୍ଠଭଙ୍ଗ ଦେଇ ଗୁଣ୍ଡାମାନେ ପଳାୟନ କଲେ । ଧୀରେ ଧୀରେ ଆଲୋକ ଲିଭିଗଲା । ]

—ଦୃଶ୍ୟାନ୍ତର—

[ ମଞ୍ଚ ଆଲୋକିତ ହେବା ସମୟରେ ଖବରକାଗଜ ବିକାଳି ଓ କେତେଜଣ ବ୍ୟକ୍ତିଙ୍କ ପ୍ରବେଶ । ]

ହକର୍—ଆଜିର ତାଜାଖବର୍ । ପ୍ରଭୁଦତ୍ତ ଓ ତାଙ୍କ ବନ୍ଧୁମାନଙ୍କ ଉପରେ ଗୁଣ୍ଡାମାନଙ୍କ ଦୌରାତ୍ମ୍ୟ । ଦେଶସାରା ଚହଳ । ଜାତି ଧର୍ମ ନିର୍ବିଶେଷରେ ଆଗ୍ରହୀ ଭକ୍ତମାନଙ୍କୁ ନେଇ ଶ୍ରୀମନ୍ଦିରରେ ପ୍ରବେଶ କରିବା ପାଇଁ ପ୍ରଭୁଦତ୍ତ ଏବଂ ତାଙ୍କ ବନ୍ଧୁମାନଙ୍କ ଅହିଂସାର ଅଭିଯାନ । ଭାଇମାନେ ପଢ଼ନ୍ତୁ ଦୈନିକ ଖବରକାଗଜ । ତାଜା ଖବର ପଢ଼ି ଖୁସି ହୁଅନ୍ତୁ ।

(ଦୁଇ ତିନିଜଣ ବ୍ୟକ୍ତି ଖବରକାଗଜ କିଣିଲେ । 'ଆଜିର ତାଜା ଖବର—ଗୁଣ୍ଡାମାନଙ୍କ ଦୌରାତ୍ମ୍ୟ' କହି କହି ହକର୍‌ର ପ୍ରସ୍ଥାନ । )

ପ୍ରଥମ ବ୍ୟକ୍ତି—ଦେଖୁଛୁ ଭାଇ, ପ୍ରଭୁଦତ୍ତ ପରି ଭଲଲୋକ ଉପରେ ଏ ରମେଶ ବାବୁଟା କେମିତି ଚଢ଼ାଉ କରିଛି !

ଦ୍ୱିତୀୟ ବ୍ୟକ୍ତି—ପ୍ରଭୁଦତ୍ତ କିନ୍ତୁ ଗୁଡ଼ବାର ଲୋକ ନୁହେଁ । ମୂଳରୁ ମୂଳରୁ ସିନା ଲୋକେ ତା ବିରୁଦ୍ଧରେ ଯାଉଥିଲେ; ଏବେ ଦେଖୁଛୁ ସେ କେମିତି ଲୋକମାନଙ୍କୁ ଏକଯୁଟ୍ କରିଛି । ହରିଜନ ଆଦିବାସୀ ଲଣ୍ଡାମୁଣ୍ଡିଆ ଗୋରାସାହେବ-ସାହେବାଣୀ, ମୁସଲମାନ, କିରସ୍ତାନ ସମସ୍ତେ ଆଜ ତାଙ୍କୁ ସମର୍ଥନ କରୁଛନ୍ତି । ମୁଁ ବି କରିବି ।

ପ୍ରଥମ ବ୍ୟକ୍ତି—ମୁଁ ମଧ୍ୟ ।

[ ହଠାତ୍ ଗୋଟିଏ ସମବେତ କଣ୍ଠରେ ଶୁଣାଗଲା 'ଆମେ ସମସ୍ତେ ସମର୍ଥନ କରିବୁ ।' ସେହି ଶବ୍ଦ ଧୀରେ ଧୀରେ ଧୀରେ ମିଳେଇ ଗଲାବେଳକୁ ମଞ୍ଚ ଅନ୍ଧକାର ହୋଇଗଲା । ]

—ଦୃଶ୍ୟାନ୍ତର—

[ ମଞ୍ଚ ଆଲୋକିତ ହେବା ସମୟରେ ରମାକାନ୍ତବାବୁ ଓ ପଣ୍ଡାମାନଙ୍କ ସହିତ ରମେଶ ଓ ତାର ବନ୍ଧୁମାନଙ୍କ କଥୋପକଥନ ]

ରମେଶ—ଆପଣଙ୍କ କହିବା ମୁତାବକ ସେମାନଙ୍କୁ ଆମେ ମାରିଲୁ; କିନ୍ତୁ କଣ ହେଲା ଦେଖିଲେ ତ ? ଜନମତ ଆମ ବିରୁଦ୍ଧରେ ଗଲା ।

ରମାକାନ୍ତ—ଯାଉ । ସେଇଠି ଆମର ଯାଏ ଆସେ କେତେ ? ଗୋଟିଏ ପ୍ରାଚୀନ ପରମ୍ପରାକୁ ରକ୍ଷା କରିବାକୁ ଅନେକ କିଛି ତ୍ୟାଗ କରିବାକୁ ହୁଏ । ମୁଁ ମୋର ପୁଅକୁ ପରିତ୍ୟାଗ କରିଛି—ଆଉ ତୁମେମାନେ ଚଞ୍ଚଳ ଭାଙ୍ଗି ପଡ଼ୁଛ ?

ଆଜାଦ୍—ସେମିତି ନୁହେଁ ଯେ ମଉସା, ପୂର୍ବରୁ ଆମେ ଲୋକଙ୍କୁ ମତେଇ ପାରୁଥିଲୁ ଯା ବିରୁଦ୍ଧରେ, ଏବେ ତାହା ସମ୍ଭବ ହୋଇ ପାରୁନାହିଁ । ଲୋକେ ଓଲଟା ଆମ ଉପରେ ଦୋଷାରୋପ କରୁଛନ୍ତି ।

ଜନ୍—ତଥାପି ଆମେ ସେମାନଙ୍କୁ ପ୍ରତିରୋଧ କରିବାକୁ ଚେଷ୍ଟା କରିବୁ । ଆମ ମିଶନ୍ ଜରିଆରେ ଏଥିପାଇଁ ଅନେକ ଖର୍ଚ୍ଚ କରିବାର ବ୍ୟବସ୍ଥା ମଧ୍ୟ ଅଛି । ପ୍ରଭୁଦତ୍ତର ଅଭିଯାନ ଯଦି ସଫଳ ହୁଏ

ଆମର ଅବସ୍ଥା ଖରାପ ହୋଇଯିବ । ଆମ ମିଶନ୍‌ର ବିରାଟ ଯୋଜନା ଚୁର୍‌ମାର୍ ହୋଇଯିବ ।

ରମାକାନ୍ତ—କି ଗୋଟାଏ ପାଗଳାମୀରେ ମାତିଛି ମୋର ନିର୍ବୋଧ ପୁଅ । ଥରେ ଯେତେ ଚେଷ୍ଟା କଲେ ବି ଯେ ଆମ ଧର୍ମରୁ ଥରେ ଖସିଛି ତାକୁ ଆଉ ଆଣି ପାରିବୁ ଆମ ଧର୍ମ ଭିତରକୁ ? ହତଭାଗା ।

ଜନ୍—ମୁଁ ବି ଆପଣଙ୍କ ସହିତ ଏକମତ ମଉସା । ଆପଣଙ୍କ ବୁନିଆଦ ଉପରେ ଏହି ନୂତନ ସଂସ୍କାର ଯେଉଁ ଆଞ୍ଚ ଆଣିବାକୁ ଚକ୍ରାନ୍ତ କରୁଛି, ମୁଁ ତାକୁ ପଣ୍ଡ କରିବାକୁ ଚେଷ୍ଟା କରିବି ।

ଆଜାଦ୍—ତୁ ଏକୁଟିଆ କାହିଁକି ? ଆମେ ସମସ୍ତେ ଚେଷ୍ଟା କରିବୁଁ କିନ୍ତୁ ମାମଲାଟା ଏତେ ସୋଜା ବୋଲି ମୋତେ ଜଣା ପଡୁନାହିଁ ।

ରମାକାନ୍ତ—ପୋଲିସକୁ ଖବର ଦେଇ ସେମାନଙ୍କୁ ପ୍ରତିରୋଧ କରିବାକୁ ହେବ ।

ରମେଶ—ଆଉ ଡ୍ରମ୍ ଡ୍ରମ୍ ମଦର ପାଇପ୍ ଖୋଲି ଦେବାକୁ ହେବ ଆମର ଅନୁଚରମାନଙ୍କ ପାଇଁ । ମୋର ପୋଲିସ୍ ଏସ୍.ପିଙ୍କ ସହିତ ଏ ବିଷୟରେ କଥାବାର୍ତ୍ତା ହୋଇଛି । ସେ କିନ୍ତୁ ରୋକ୍‌ଠୋକ୍ କହି ଦେଇଛନ୍ତି ଯେ ସେ ଅହିଂସ ଶୋଭାଯାତ୍ରା ଉପରେ ଗୁଳି କରିବେ ନାହିଁ ।

ଜନ୍—ଆରେ ଅହିଂସ ଶୋଭାଯାତ୍ରାକୁ ହିଂସାମୁଖୀ କରିବାର ଭାର ମୁଁ ନେଉଛି । ଆଚ୍ଛା ମଉସା, ଆମେ ଚାଲିଲୁ ଆମ କାମରେ । ଆପଣ ବି ପ୍ରସ୍ତୁତ ରହନ୍ତୁ ସେହି ଶୋଭାଯାତ୍ରାକୁ ରୋକିବା ପାଇଁ ।

( ମଞ୍ଚ ଅନ୍ଧକାର ହୋଇଗଲା । )

## —ଶେଷ ଦୃଶ୍ୟ—

[ ମଞ୍ଚ ଆଲୋକିତ ହେବା ସମୟରେ ଦେଖାଗଲା ଅରୁଣ ସ୍ତମ୍ଭ । ଗୋଟିଏ ପଟରେ କୃଷ୍ଣ ଚେତନା ସଂଘର ଭକ୍ତମାନେ ତନ୍ମୟ ହୋଇ 'ହରେକୃଷ୍ଣ ହରେ ରାମ' ଭଜନ କରୁଛନ୍ତି । ଅନ୍ୟ ପଟରେ ରମାକାନ୍ତ ବାବୁ ଓ

ପଣ୍ଡାମାନେ ବ୍ୟଗ୍ରତାର ସହିତ ଶୋଭାଯାତ୍ରାକୁ ଅପେକ୍ଷା କରିଛନ୍ତି । ଦୂରରୁ ଶୁଭାଯାଉଛି ସ୍ଲୋଗାନ : 'ଓ୍ୱାନ୍-ୱେ ଟ୍ରାଫିକ୍—ବନ୍ଦ କର, ବନ୍ଦ କର,' 'ଜଗତର ନାଥ—ଜଗନ୍ନାଥ', 'ମନ୍ଦିରର ବ୍ୟଭିଚାର—ବନ୍ଦକର', 'ଭକ୍ତମାନଙ୍କ ପାଇଁ ଶ୍ରୀମନ୍ଦିର—ଖୋଲିଦିଅ, ଖୋଲିଦିଅ,' 'ଏକବିଂଶ ଶତାବ୍ଦୀର ନୂତନ ସୂର୍ଯ୍ୟ ଜାଗି ଉଠ, ଜାଗି ଉଠ' । ଏପରି ଅନେକ ପ୍ଲାକାର୍ଡ ଧରି ଆଗେଇ ଆସୁଛି ବିରାଟ ଜନ-ସମୁଦ୍ର । ଶାନ୍ତି ଶୃଙ୍ଖଳା ରକ୍ଷା କରିବା ପାଇଁ ପୋଲିଶ ମୁତୟନ ହୋଇଛି । ଶୋଭାଯାତ୍ରାର ପୁରୋଭାଗରେ ପ୍ରଭୁଦତ୍ତ ଓ ହାସିନା । ତାଙ୍କ ପରେ ତାର ବନ୍ଧୁଗଣ । ତା'ପରେ ନଜରୁଲ୍ ଇସ୍‌ଲାମ୍ ଓ ନସିମା ବେଗମ୍ ଆଉ ଅନେକ ଅନେକ । ]

ପ୍ରଭୁଦତ୍ତ ( ପ୍ରବେଶ କରି )—ବନ୍ଧୁଗଣ, ସେମାନେ ଯେତେ ଉତ୍ତେଜିତ କଲେ ମଧ୍ୟ ମୁଣ୍ଡପାତି ସହି ନିଅ । ଆମ ଉପରେ ଗୁଣ୍ଡାମାନେ ଆକ୍ରମଣ କରନ୍ତୁ, ପୋଲିଶ ଲାଠିମାରୁ—ଆମର ଖାତିର ନାହିଁ । ଆମର ଏକମାତ୍ର ଲକ୍ଷ୍ୟ—ମନ୍ଦିର ପ୍ରବେଶ । ଏହା ଆମର ନୈତିକ ଅଧିକାର, ଆଇନଗତ ଅଧିକାର । କେହି ତାକୁ ରୋକି ପାରିବେ ନାହିଁ । ଆଜ ପୃଥିବୀ ପୃଷ୍ଠକୁ ଏକବିଂଶ ଶତାବ୍ଦୀର ପ୍ରଥମ ସୂର୍ଯ୍ୟା-ଲୋକ ଉଦ୍ଭାସିତ କରିଛି । ଆଜ ମୁକ୍ତିର ପ୍ରଥମ ଆଲୋକର ସନ୍ଧାନରେ ଆମେ ବାହାରିଛୁ ଅହିଂସ ପଥରେ । ଆମର ଯାତ୍ରା ବିଜୟର ଯାତ୍ରା ।

ଏସ୍. ପି.—ଆପଣମାନେ ଅହିଂସ ଥିବା ପର୍ଯ୍ୟନ୍ତ ଆମେ କୌଣସି କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବୁ ନାହିଁ, ପ୍ରଭୁଦତ୍ତ ବାବୁ ।

ପ୍ରଭୁଦତ୍ତ—ଧନ୍ୟବାଦ ଏସ୍. ପି ସାହେବ । ଆପଣ ତ ନିଜେ ଆଖିରେ ଦେଖିଛନ୍ତି ଆମ ଶୋଭାଯାତ୍ରା କଲେଜ ପାର ହେବା ସମୟରେ ଆଜାଦ୍, ଜନ୍, ରମେଶ ଓ ସେମାନଙ୍କ ବନ୍ଧୁମାନେ ମଦରେ

ମାତାଲ୍ ହୋଇ ଆମ ଶୋଭାଯାତ୍ରା ସଙ୍ଗେ ମିଶି ପୋଲିଶ ଉପରେ ତେଲ ବର୍ଷଣ କରିଥିଲେ । ଭାଗ୍ୟକୁ ଆମେ ସେମାନଙ୍କୁ ଧରେଇ ଦେଲୁ ଏବଂ ପୋଲିଶ ହଠାତ୍ ତେଲମାଡ଼ ପାଇ ଉତ୍ତ୍ୟକ୍ତ ହୋଇ ଅହିଂସ ଶୋଭାଯାତ୍ରା ଉପରେ ଗୁଳି ନ କରି ଯଥେଷ୍ଟ ସଂଯମ ଆଚରଣ କଲା । ଆପଣ ସେମାନଙ୍କୁ ଅଟକ ରଖିଥିବାରୁ ଆପଣଙ୍କୁ ଅଶେଷ ଧନ୍ୟବାଦ । ବିପକ୍ଷର ପକ୍ଷର ଏମିତି ହିଂସାର ଉଦ୍ୟମ ଛଡ଼ା ଆପଣ ଆଉ ହିଂସାର ଗନ୍ଧ ବି ପାଇବେ ନାହିଁ ।

ଏସ୍. ପି.—ତାହାହେଲେ ଆପଣଙ୍କୁ କେହି ବାଧା ଦେଇ ପାରିବେ ନାହିଁ । ପୋଲିଶ୍ ଉପରେ ତେଲ ବର୍ଷଣ କରିବାର ସେମାନଙ୍କ ପ୍ଲାନ୍ ଆମ ଖୁପିଆ ବିଭାଗ ଆଗରୁ ଜାଣି ପାରିଥିଲା ।

( ଶୋଭାଯାତ୍ରା ଆଗେଇ ଆସିଲା । )

ରମାକାନ୍ତ—ବନ୍ଦ କର ତୋର ଶୋଭାଯାତ୍ରା । ଆମର ଧର୍ମ ଓ ସଂସ୍କୃତିର ଛାତିରେ ଲାତ ମାରି ତୁ ଧର୍ମର ସଂସ୍କାର କରିବୁ ?

ପ୍ରଦ୍ୟୁମ୍ନଦତ୍ତ—ବାପା, ଆଜି ଆପଣ ଆମକୁ ରୋକି ପାରିବେ ନାହିଁ । ଯୁଗ ବଦଳି ଯାଇଛି । ଆଜି ଆସିଛି ଏକବିଂଶ ଶତାବ୍ଦୀର ଆହ୍ୱାନ । ଯୁଗପୋଯୋଗୀ କାମକୁ କେହି ରୋକି ପାରିବେ ନାହିଁ । ମୋର ଏକାନ୍ତ ଅନୁରୋଧ, ଆପଣ ଘୁଞ୍ଚି ଯାଆନ୍ତୁ ବାପା ।

ରମାକାନ୍ତ—ନା ନା—ମୁଁ ବଞ୍ଚିଥିବା ପର୍ଯ୍ୟନ୍ତ ବେଧର୍ମୀମାନେ ମନ୍ଦିର ପ୍ରବେଶ କରି ପାରିବେ ନାହିଁ । ମୁଁ ମୁକ୍ତି ମଣ୍ଡପର ଅବମାନନା କରିପାରିବି ନାହିଁ ।

ପ୍ରଦ୍ୟୁମ୍ନଦତ୍ତ—କିଏ ବେଧର୍ମୀ ? ଆପଣଙ୍କର ଏହି ଭଣ୍ଡ ସେବକମାନେ ନା ଏହି ସରଳ ଭକ୍ତମାନେ ?

ରମାକାନ୍ତ—ନିଜର ସମସ୍ତ ସ୍ୱାର୍ଥକୁ ଜଳାଞ୍ଜଳି ଦେଇ ଯେଉଁ ସେବକମାନେ ଶତାବ୍ଦୀ ଶତାବ୍ଦୀ ଧରି ମନ୍ଦିରର ନିୟମ କାନୁନ ସୃଙ୍ଖଳାବଦ୍ଧ ପାଳନ କରି ଆସିଛନ୍ତି ସେମାନଙ୍କୁ ତୁ ଭଣ୍ଡ ସେବକ କହୁଛୁ ?

ପ୍ରଦ୍ୟୁମ୍ନଦତ୍ତ—ଆଉ ନିଜର ସ୍ୱାର୍ଥ ସାଧନ ପାଇଁ ନିରୀହ ଭକ୍ତମାନଙ୍କ ଉପରେ ଯେଉଁ ଜୁଲୁମ୍ ଚାଲିଛି, କିଏ କରୁଛି ତାହା ? ଆପଣ ଜବାବ୍ ଦେଇ ପାରିବେ, ବାପା ?

ରମାକାନ୍ତ—ମୁଁ ଯୁକ୍ତି କରିବାକୁ ଚାହେଁନା । ମୁଁ ଏହି ମ୍ଲେଚ୍ଛମାନଙ୍କୁ ମନ୍ଦିର ଭିତରକୁ ପ୍ରବେଶ କରିବାକୁ ଦେବି ନାହିଁ । ( ଟିକିଏ ଅଟକି ) ତୁ ତ ନିଜେ ନାସ୍ତିକ । ଗତ କେଇ ବର୍ଷ ହେବ, ଯେତେ ଚେଷ୍ଟା କଲେ ମଧ୍ୟ ତୁ ମନ୍ଦିର ଦର୍ଶନ କରିବାକୁ ମନା କରି ଦେଉଥିଲୁ—ଆଜି କାହିଁକି ଆସିଚୁ ମନ୍ଦିର ଦର୍ଶନ କରିବାକୁ ?

ପ୍ରଭୁଦତ୍ତ—ମୁଁ ଆଜିଦିନର ଅପେକ୍ଷାରେ ଥିଲି ବାପା । ଯେଉଁଦିନ ଜାତି-ଧର୍ମ ନିର୍ବିଶେଷରେ ସମସ୍ତେ ଜଗତର ନାଥ ଜଗନ୍ନାଥଙ୍କ ଦର୍ଶନ ଲାଭ କରି ପାରିବେ, ସେଦିନର ଅପେକ୍ଷା ମୁଁ କରିଥିଲି ବାପା । ମନ୍ଦିରକୁ ହରିଜନମାନଙ୍କ ପ୍ରବେଶାଧିକାର—ସ୍ୱେ ଥିଲା ଆମର ଜାତିର ଜନକ ପ୍ରିୟ ବାପୁଜୀଙ୍କ ଅତି ପ୍ରିୟ ସ୍ୱପ୍ନ । ଆମେ ସମସ୍ତେ ହରିଙ୍କ ଜନ—ପ୍ରଭୁଙ୍କ ଆଖିରେ ସମସ୍ତେ ସମାନ । ମହାତ୍ମାଗାନ୍ଧିଙ୍କର ସେହି ସ୍ୱପ୍ନକୁ ବାସ୍ତବରେ ପରିଣତ କରିବା ପାଇଁ ଆପଣ ଆଗେଇ ଆସନ୍ତୁ ବାପା ।

ରମାକାନ୍ତ—(କ୍ରୁଦ୍ଧ କଣ୍ଠରେ) ମୋତେ ବାପା ବୋଲି ସମ୍ବୋଧନ କରିବାର ଅଧିକାର ତୁ ହରେଇ ସାରିଛୁ । ମୁଁ ତୋତେ ପରିତ୍ୟାଗ କରିଛି ।

ପ୍ରଭୁଦତ୍ତ—ତେବେ ଶୁଣନ୍ତୁ ମୁକ୍ତି ମଣ୍ଡପର ସଭାପତି ମହାଶୟ ! ଦେଖୁଛନ୍ତି ଏହି ଅଗଣିତ ଜନ-ସମୁଦ୍ର ? ଏହି ଜଗନ୍ନାଥ ଦର୍ଶନାକାଂକ୍ଷୀ ଅଗଣିତ ନରନାରୀଙ୍କୁ ଲକ୍ଷ୍ୟ କରି ପାରୁଛନ୍ତି ଆପଣ ? ଆପଣ ଘୁଞ୍ଚି ଯାନ୍ତୁ ।

ରମାକାନ୍ତ—ନା ନା, ମୁଁ ଘୁଞ୍ଚିବି ନାହିଁ । (ପଣ୍ଡାମାନଙ୍କୁ ଲକ୍ଷ୍ୟ କରି ) ପ୍ରଭୁଙ୍କ ସେବକଗଣ ! ଏମାନଙ୍କ ଗତିରୋଧ କର ।

ନଜରୁଲ୍—(ଟିକିଏ ଆଗେଇ ଆସି) ସମୁଦ୍ରର ଗତିକୁ କେହି ରୋକି ପାରିବେ ନାହିଁ ରମାକାନ୍ତବାବୁ । ଆପଣ ବେଢାର କଥା ମାନିଯାନ୍ତୁ । ଏ ଜନ-ସମୁଦ୍ରକୁ ଆପଣ ତ ଛାର, ପୃଥିବୀର କୌଣସି ଶକ୍ତି ରୋକି ପାରିବ ନାହିଁ ।

ରମାକାନ୍ତ—ଚୁପ୍ କର ମ୍ଲେଚ୍ଛ । ମୋ ପୁଅକୁ ବେଧର୍ମୀ କଲୁ । ଗୋଟିଏ ନାଗୁଣୀର ପ୍ରେମ ଜାଲରେ ପକାଇ ତା'ର ଭବିଷ୍ୟତକୁ ଚୂର୍ମାର୍ କଲୁ । ଆଜି ପୁଣି ଆସିଛୁ ମୋତେ ଉପଦେଶ ଦେବା ପାଇଁ ?

ନଜରୁଲ୍—ତୁମେ ଆମକୁ ଭୁଲ୍ ବୁଝ ନାହିଁ ରମାକାନ୍ତ ବାବୁ । ଜଗନ୍ନାଥ ସମସ୍ତଙ୍କ ଠାକୁର—ତୁମର, ମୋର, ପିଟର୍‌ର, ବଲୱାରର, ସମସ୍ତଙ୍କର ।

ରମାକାନ୍ତ – ବନ୍ଦକର ତୁମର ବକ୍‌ବାସ୍ । ଗୋଟିଏ ଶସ୍ତା ଦରର ମାମୁଲ ସ୍ତ୍ରୀର ପ୍ରେମ-ପାଶରେ ମୋ ପୁଅକୁ ପକେଇ—

ପ୍ରଦ୍ୟୁମ୍ନଦତ୍ତ –ମୁହଁରେ ଲଗାମ୍ ଲଗାଇ କଥା କହନ୍ତୁ ଆପଣ । ଆପଣ କୌଣସି ସ୍ତ୍ରୀଲୋକର ଚରିତ୍ର ଉପରେ ଆଞ୍ଚ ଆଣି ପାରିବେ ନାହିଁ । ପଣ୍ଡିତ-ମହାଶୟ ! ଆଉ ହାସିନା ହେଉଛୁ ମୋର ବିବାହିତା ପତ୍ନୀ—ମୋର ସହକର୍ମିଣୀ—ମୋର ସହଧର୍ମିଣୀ । ଆପଣ ବୁଝିଯାନ୍ତୁ ।

( ରମାକାନ୍ତ ବାବୁ 'ନା ନା ତାହା ହୋଇ ପାରିବ ନାହିଁ' ବୋଲି ଚିତ୍କାର କରୁଥାନ୍ତି । ସେ ଓ ପଣ୍ଡାମାନେ ହସ୍ତ ପ୍ରସାରଣ ପୂର୍ବକ ଶୋଭାଯାତ୍ରା ରୋକିବାକୁ ଚେଷ୍ଟା କରୁଥାନ୍ତି କିନ୍ତୁ ପଛକୁ ପଛକୁ ଘୁଞ୍ଚିଯାଉଥାନ୍ତି । ଅଗଣିତ ଜନତା ପ୍ଲାକାର୍ଡ ଧରି ଆଗେଇ ଚାଲିଥାଏ । ସେହି ଜନତା ମଧ୍ୟରେ ନିଜର ସ୍ତ୍ରୀ ମାୟା ଦେବୀଙ୍କୁ ଦେଖି ବିସ୍ମିତ ହୋଇ କହିଲେ ରମାକାନ୍ତବାବୁ । )

ରମାକାନ୍ତ—ଏ ଭଣ୍ଡ ଦଳରେ ତୁମେ ମଧ୍ୟ ସାମିଲ୍ ହୋଇଛ ମାୟା ? ହେ ଭଗବାନ୍, କି ଦୁଃସହ ଯନ୍ତ୍ରଣା ! ମୋ ବିରୁଦ୍ଧରେ କି ଭୀଷଣ ଷଡ଼ଯନ୍ତ୍ର ! !

ମାୟା—ମୁଁ କାହିଁକି ? ଆଜି ସମସ୍ତେ ଏ ଦଳରେ ସାମିଲ ହେବା ଉଚିତ । ଆମର ଦେଶର ଅଖଣ୍ଡତା ରକ୍ଷା କରିବାର ଏହା ଏକମାତ୍ର ପନ୍ଥା । ତୁମେ ପାଖେଇ ଯାଅ । ଏହି ଜନ-ସମୁଦ୍ରକୁ ତୁମେ ବାନ୍ଧ କରି ପାରିବ ନାହିଁ ।

ରମାକାନ୍ତ—ଅଲ୍‌ବତ୍ ବନ୍ଦ କରିବ ।

( ସେ ଓ ପଣ୍ଡାମାନେ ପଛଘୁଞ୍ଚା ଦେଇ ବାଇଶ ପାହାଚର ଗୋଟିଏ ପରେ ଗୋଟିଏ ପାହାଚ ଚଢ଼ିବାକୁ

ଲାଗିଥାନ୍ତି । ଜନତା ଆଗେଇ ଚାଲିଥାଏ । ସବା ଉପର ପାହାଚରେ ଠିଆ ହୋଇ ରମାକାନ୍ତବାବୁ ହସ୍ତପ୍ରସାରଣ କରି କହିବାକୁ ଲାଗିଲେ—)

ରମାକାନ୍ତ—ଆଉ ମୁଁ ବାଟ ଛାଡ଼ି ପାରିବ ନାହିଁ । ତୁମେ ସବୁ ଫେରିଯାଅ କହୁଛି । ମୋ ଜୀବନ ଥିବା ଯାଏ ମୁଁ ପ୍ରତିରୋଧ କରିବ ।

( ରମାକାନ୍ତ ବାବୁ ଚିତ୍କାର କରି ଚାଲିଥାନ୍ତି । ଅଗଣିତ ଜନ ସମୁଦ୍ର ସମସ୍ତଙ୍କୁ ଆଡ଼େଇ ଦେଇ ଚାଲିଥାଏ ଜଗନ୍ନାଥଙ୍କୁ ଦର୍ଶନ କରିବା ପାଇଁ । 'ହରେକୃଷ୍ଣ ହରେ ରାମ' କୀର୍ତ୍ତନ କରି ଆଗେଇ ଚାଲିଥାନ୍ତି ଭକ୍ତମାନେ । ଜାତିଧର୍ମ-ବର୍ଣ୍ଣ-ନିର୍ବିଶେଷରେ ଆଗେଇ ଚାଲିଥାନ୍ତି ଭକ୍ତଗଣ ! )

[ ପୃଷ୍ଠଭୂମିରେ ପ୍ରଥମରୁ ଥିବା ଜଗନ୍ନାଥ ମୂର୍ତ୍ତିର ଲହୁ ଓ ଲୁହ ଧାର ଉଭେଇ ଯାଏ । ତ୍ରିଭୁବନ ବେଶରେ ପ୍ରଭୁ ଜଗନ୍ନାଥଙ୍କ ହସ ହସ ମୁଖ ସମସ୍ତଙ୍କ ଆଖି ଆଗରେ ଭାସିଉଠେ । ସମସ୍ତେ ନତ ମସ୍ତକ ହୋଇ ପ୍ରଣାମ କରନ୍ତି । ]

ନଜରୁଲ୍—ମୋର ଅର୍ଦ୍ଧ ଶତାବ୍ଦୀ ତଳର ଜଗନ୍ନାଥ ଦର୍ଶନ ବାସନା ଆଜ ପୂରଣ ହୋଇଛି ପ୍ରଭୁ । ହେ ଆଲ୍ଲା—ହେ ପ୍ରଭୁ ଜଗନ୍ନାଥ । ଆଲ୍ଲା ହୋ ଆକ୍‌ବର । ପ୍ରଭୁ ଜଗନ୍ନାଥଙ୍କର ଜୟ ।

[ 'ଜଗନ୍ନାଥ ସ୍ୱାମୀ ନୟନ ପଥଗାମୀ ଭବ ତୁମେ' ସଙ୍ଗୀତର ମଧୁର ମୂର୍ଚ୍ଛନାରେ ବାୟୁମଣ୍ଡଳ ନିନାଦିତ ହୁଏ । ତା'ପରେ ସମବେତ କଣ୍ଠରେ ଶୁଣାଯାଏ : ]

ମନ୍ଦିର୍ ମେ ରାମ, ମସ୍‌ଜିଦ୍ ମେ ଆଲ୍ଲା
ଗୁରୁଦ୍ୱାର ମେ ତୁ ଗୁରୁ ନାନକ ହୈ,
ଭକ୍ତ-ହୃଦୟ ମେ ତୁ ଜଗନ୍ନାଥ
ତୁ ସଚ୍ଚା ପତିତପାବନ ହୈ ।

—ଯବନିକା—

